# ORIYA HISTORY OF INDIA

For Standards V and VI

MADHUSUDAN DAS, B. A.

AND

BHAIRAB CHANDRA DUTT, B. A.

---

# ମଧ୍ୟ ଓଡ଼ିୟା ଭାରତବର୍ଷର ଇତିହାସ

ଶ୍ରୀ ମଧୁସୂଦନ ଦାଶ ବ. ଏ. ଙ୍କ ଦ୍ୱାରା ସଙ୍କଳିତ ।

---

MACMILLAN & CO., LIMITED
CALCUTTA, BOMBAY AND LONDON.

# ସୂଚୀପତ୍ର ।

—୦—

ବିଷୟ ପୃଷ୍ଠାଙ୍କ ।

ବିଷୟ | ପୃଷ୍ଠାଙ୍କ ।

ହାସରେ ଲେଖାଥାଏ । ସେଗୁଡ଼ିକ ଜାଣିଲେ ଲୋକେ ଦେଶପ୍ରତି ଯେଉଁଗୁଡ଼ିକ ଭଲ ତାହା କରି ମନ୍ଦଗୁଡ଼ିକ ପରିତ୍ୟାଗ କରନ୍ତି । ଆହୁରି ମଧ୍ୟ ଯେଉଁ କାରଣ ଘଟିଥିବାରୁ ଯେଉଁ କାର୍ଯ୍ୟଗୁଡ଼ିକ ପୂର୍ବେ ଘଟିଥିଲା ତାହା ଜାଣିପାରିଲେ, ବର୍ତ୍ତମାନର ଘଟନାମାନ ଦେଖି ଭବିଷ୍ୟତରେ କଣ ଘଟିବ ତାହା ମଧ୍ୟ ଲୋକେ ଅନେକ ପରିମାଣରେ ଅନୁମାନ କରି-ପାରନ୍ତି ।

ଆମ୍ଭମାନଙ୍କ ଯେନ ଦେଶ । ଯହିଁରେ ଦେଶର ମଙ୍ଗଳ ହୁଏ, ତହିଁରେ ଆମ୍ଭମାନଙ୍କର ମଙ୍ଗଳ ; ଯହିଁରେ ଦେଶର କ୍ଷତି, ତହିଁରେ ଆମ୍ଭମାନଙ୍କର କ୍ଷତି । ସେହି କାରଣରୁ ଆମ୍ଭମାନଙ୍କର ଇତିହାସ ପଢ଼ିବା ଭାରି ଆବଶ୍ୟକ ।

ପୂର୍ବେ କୁହାଯାଇଅଛି ଯେ ଆମ୍ଭମାନଙ୍କ ଯେନ ଦେଶ । ଆମ୍ଭେ-ମାନେ କିଏ ? ଦେଶର ଲୋକସମୂହ ବା ଅଳ୍ପ କଥାରେ କହିଲେ ଏକ ସମାଜ । ମନୁଷ୍ୟମାନେ ସମାଜ ଛଡ଼ା ରହିପାରନ୍ତି ନାହିଁ । ଏହାର କାରଣ ଏହି ଯେ, ଜୀବନରକ୍ଷା କରିବା ଲାଗି ମନୁଷ୍ୟର ଯାହା ଯାହା ପ୍ରୟୋଜନ, ମନୁଷ୍ୟ ଏକାକୀ ରହିଲେ ସେସମସ୍ତ ନିଜ ବଳରେ ସଂଗ୍ରହ କରିପାରେ ନାହିଁ । ମନେକର ଜଣେ ଲୋକ କୃଷକ । ସେ ଲୁଗା ଦରକାର କରେ, ସୁତରାଂ ତାହାର ଜଣେ ତନ୍ତି ଆବଶ୍ୟକ । ସେ ରୋଗ-ନିବାରଣ ନିମନ୍ତେ ଔଷଧ ଦରକାର କଲା, ତାହାର ଜଣେ ବୈଦ୍ୟ ଆବଶ୍ୟକ । ନିଜ କୃଷିକାର୍ଯ୍ୟ ଚଳାଇବା ନିମନ୍ତେ ସୁଦ୍ଧା ତାହାର ଲଙ୍ଗଳ ପ୍ରସ୍ତୁତ କରିବା ଲାଗି ବଢ଼େଇ, ହାତ ହତିଆର ଲାଗି କମାର, କୃଷିଜାତ ଦ୍ରବ୍ୟ ବିଭିନ୍ନ ସ୍ଥାନକୁ ପଠାଇବା ଲାଗି ଗାଡ଼ିବାଲା, ନାଉରି ଇତ୍ୟାଦି ଦରକାର । ସେ ଜଣେ ଲୋକ, ଏ ସମସ୍ତ କାର୍ଯ୍ୟ ସେ ନିଜ ହାତରେ କଲେ ତାହାର ଅନେକ ସମୟ ଯିବ ଏବଂ କୌଣସି ଗୋଟିଏ କାର୍ଯ୍ୟ ମଧ୍ୟ ଭଲରୂପେ ଚଳାଇ ପାରିବ ନାହିଁ । ସେହି ହେତୁରୁ ସେ

ଅନ୍ୟମାନଙ୍କଠାରୁ ସାହାଯ୍ୟ ପାଇବା ଲାଗି ସମାଜଭିତରେ ବାସ କରେ ଏବଂ ନିଜ କୃଷିଜାତ ଦ୍ରବ୍ୟ ଦେଇ ମଧ୍ୟ ଅନ୍ୟମାନଙ୍କୁ ସାହାଯ୍ୟ କରେ । କୃଷକପରି ପ୍ରତ୍ୟେକ ଲୋକ ସମାଜର ଅନ୍ୟାନ୍ୟ ଲୋକମାନଙ୍କ-ଠାରୁ ସାହାଯ୍ୟ ପାଏ ଏବଂ ଅନ୍ୟମାନଙ୍କୁ ସାହାଯ୍ୟ ଦେବା ଲାଗି ବାଧ୍ୟ ହୁଏ । ମାତ୍ର ସବୁ ମନୁଷ୍ୟଙ୍କ ସ୍ୱଭାବ ଏକାପରି ନୁହେ । କେହି କେହି ସାହାଯ୍ୟ ଲୋଡ଼ନ୍ତି ମାତ୍ର ସାହାଯ୍ୟ ଦେବାକୁ ଭଲ ପାନ୍ତି ନାହିଁ, ବରଂ ଅନ୍ୟର ଅନିଷ୍ଟ କରିବାକୁ ଚେଷ୍ଟା କରନ୍ତି । ସେହି ହେତୁରୁ ଏହି ସମସ୍ତ ଅକାର୍ଯ୍ୟରୁ ଲୋକମାନଙ୍କୁ ରକ୍ଷା କରିବା ନିମନ୍ତେ ସମାଜରେ ଜଣେ ରାଜା ଦରକାର ହୁଏ । ତାହାଙ୍କର ସମସ୍ତଙ୍କ ଉପରେ କ୍ଷମତା ରହେ । ଯେ କୌଣସି ଦୋଷ କରେ ରାଜା ତାହାକୁ ଦଣ୍ଡ ଦିଅନ୍ତି । ଦଣ୍ଡ ଦେବାର ଉଦ୍ଦେଶ୍ୟ ଏହି ଯେ, ଦଣ୍ଡିତ ବ୍ୟକ୍ତି ଆଉ ପରର ଅନିଷ୍ଟ କରିବାକୁ ଯିବ ନାହିଁ ଏବଂ ତାହାର ଦଣ୍ଡପାଇବା ଦେଖି ଅନ୍ୟଲୋକେ ପରର ଅନିଷ୍ଟ କରିବାକୁ ଯିବେ ନାହିଁ । ଏହାକୁ ରାଜାଙ୍କର ଶାସନକାର୍ଯ୍ୟ ବୋଲାଯାଏ । ଲୋକ ଅଳ୍ପ ଥିଲେ ରାଜା ଏହି ଶାସନକାର୍ଯ୍ୟ ନିଜେ ଚଳାନ୍ତି । ଲୋକ ବେଶି ହେଲେ ରାଜା ଅନ୍ୟ ଲୋକ ନିଯୁକ୍ତ କରି ଏହି ଶାସନକାର୍ଯ୍ୟ ଚଳାନ୍ତି । ଏହି ଶେଷୋକ୍ତ ଲୋକମାନଙ୍କୁ ରାଜପୁରୁଷ କହନ୍ତି ।

ରାଜାଙ୍କର କାର୍ଯ୍ୟ ଦୁଇ ପ୍ରକାର—୧ ସମାଜର ଲୋକମାନଙ୍କୁ ଶାସନ କରିବା, ୨ ଅନ୍ୟ ସମାଜର ଲୋକ ନିଜ ଅଧୀନସ୍ଥ ସମାଜର ଲୋକ-ମାନଙ୍କର ଅନିଷ୍ଟ କଲେ ସେମାନଙ୍କୁ ଦମନ କରିବା ।

ପୂର୍ବେ ଯାହା କୁହାଗଲା ତହିଁରୁ ତୁମ୍ଭେମାନେ ବୁଝିପାରିବ ଯେ, ପ୍ରତ୍ୟେକ ସମାଜର ଯୋଡ଼ିଏ ଅଙ୍ଗ ଅଛି—୧ ରାଜା ଏବଂ ରାଜପୁରୁଷ-ମାନେ, ୨ ସମାଜର ଅନ୍ୟାନ୍ୟ ଲୋକ ବା ପ୍ରଜାମାନେ । ରାଜା ସ୍ୱୟଂ

ସମାଜର ଅନ୍ତର୍ଗତ । ସେ ସମାଜର ପ୍ରତ୍ୟେକ ଲୋକପରସ୍ପରକୁ ସାହାଯ୍ୟ ଦିଅନ୍ତି ଓ ତାହାଠାରୁ ସାହାଯ୍ୟ ପାନ୍ତି । ନିଜ ପ୍ରଜାମାନଙ୍କ ସହିତ ଏହି ସମ୍ବନ୍ଧ ଛଡ଼ା ତାଙ୍କର ଅନ୍ୟ ସମାଜ ବା ସେହି ସମାଜର ରାଜାଙ୍କ ସହିତ ମଧ୍ୟ ଗୋଟିଏ ବିଶେଷ ସମ୍ବନ୍ଧ ଅଛି । ଏହି ସମ୍ବନ୍ଧ ଥିବାରୁ ସେ ଅନ୍ୟ ସମାଜ ବା ତାହାର ରାଜାଙ୍କ ସହିତ ସନ୍ଧି ବା ଯୁଦ୍ଧ କରିପାରନ୍ତି । କୌଣସି ପ୍ରଜାର ଏପ୍ରକାର ସନ୍ଧି ବିଗ୍ରହ କରିବାର ଅଧିକାର ନାହିଁ ।

କୌଣସି ଲୋକର ଅବସ୍ଥା କହିଲେ ସେହି ଲୋକର ଜୀବନରେ ଯାହା ଘଟିଥିଲା, ଘଟୁଅଛି ବା ଘଟିବ ଏହାହିଁ ବୁଝାଯାଏ । ପ୍ରତ୍ୟେକ ଲୋକପରି ସମାଜର ମଧ୍ୟ ଅବସ୍ଥା ଅଛି, ଏହି ଅବସ୍ଥା ସମାଜର କୌଣସି ବିଶେଷ ଲୋକର ନୁହେ, ଲୋକସମୂହର ଅଟେ । ଏହି ଅବସ୍ଥାର ବିବରଣ ଇତିହାସରେ ଲେଖାଯାଏ । ସମାଜର ବା ଦେଶର ଅବସ୍ଥା ଦୁଇ ଭାଗରେ ବିଭକ୍ତ :—୧ ରାଜନୈତିକ, ୨ ସାମାଜିକ । ଦେଶରେ ସୁଶାସନ ଚଳାଇବା ଏବଂ ପ୍ରଜାମାନଙ୍କୁ ସୁଖ ଶାନ୍ତିରେ ରଖିବା ଲାଗି ରାଜା ଯେ ସମସ୍ତ କାର୍ଯ୍ୟ କରନ୍ତି ସେ ସମସ୍ତ ଦେଶର ରାଜନୈତିକ ଅବସ୍ଥାରେ ବର୍ଣ୍ଣିତ ହୁଏ । ସମାଜର ଲୋକମାନେ ପରସ୍ପରକୁ କିପରି ସାହାଯ୍ୟ ଦିଅନ୍ତି ତାହାର ବିବରଣ ଏବଂ ସେମାନଙ୍କର ଶାରୀରିକ, ମାନସିକ ଓ ନୈତିକ ବିବରଣମାନ ଦେଶର ସାମାଜିକ ଅବସ୍ଥାରେ ବର୍ଣ୍ଣିତ ହୁଏ ।

ଆମ୍ଭମାନଙ୍କ ଦେଶ ଏହି ଭାରତବର୍ଷ ଇଂରେଜ-ରାଜତ୍ୱ ପର୍ଯ୍ୟନ୍ତ ଜଣେ ରାଜାଙ୍କ ଅଧୀନ ନ ଥିଲା । ସେହି ହେତୁରୁ ଇଂରେଜ-ରାଜତ୍ୱ ପର୍ଯ୍ୟନ୍ତ ଭାରତବର୍ଷର ଲୋକମାନେ ଏକ ସମାଜର ଅନ୍ତର୍ଗତ ନ ହୋଇ ଅନେକ ସମାଜର ଅନ୍ତର୍ଗତ ଥିଲେ । ସୁତରାଂ ଏ ଦେଶର ପୁରାତନ ଇତିହାସ ଏକ

ସମାଜର ବିବରଣ ନୁହେ, ଅନେକ ସମାଜର । ପରଲିଖିତ ବିବରଣ-ଗୁଡ଼ିକ ପଢ଼ିଲାବେଳେ ପାଠକମାନଙ୍କର ଏହି କଥାଟିକ ବିଶେଷରୂପେ ସ୍ମରଣ ରଖିବା ଉଚିତ ।

---

## ହିନ୍ଦୁ-ରାଜତ୍ୱକାଳରେ ଭାରତର ଅବସ୍ଥା ।

ଅନେକ ବିଖ୍ୟାତ ଇତିହାସବେତ୍ତା ହିନ୍ଦୁ-ରାଜତ୍ୱକାଳକୁ ସ୍ଥୂଳତଃ ତିନି ପ୍ରଧାନ ଐତିହାସିକ ଯୁଗରେ ବିଭକ୍ତ କରିଅଛନ୍ତି ; ଯଥା—

୧ । ବୈଦିକ ଯୁଗ—ଏହା ଖ୍ରୀଷ୍ଟ ପୂର୍ବ ୬ଷ୍ଠ ଶତାବ୍ଦୀ ପର୍ଯ୍ୟନ୍ତ ବିସ୍ତୃତ ।

୨ । ବୌଦ୍ଧ ଯୁଗ—ଏହା ଖ୍ରୀ : ପୂ : ୬ଷ୍ଠ ଶତାବ୍ଦୀଠାରୁ ୬୪୮ ଖ୍ରୀ : ଅ : ରେ ରାଜା ହର୍ଷବର୍ଦ୍ଧନଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବିସ୍ତୃତ ।

୩ । ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ଯୁଗ—ଏହା ହର୍ଷବର୍ଦ୍ଧନଙ୍କ ମୃତ୍ୟୁ-ଠାରୁ ମୁସଲମାନ-ରାଜତ୍ୱ ପର୍ଯ୍ୟନ୍ତ ବିସ୍ତୃତ ।

ଉପରଲିଖିତ ପ୍ରତ୍ୟେକ ଯୁଗରେ ଭାରତର ଅବସ୍ଥା କିପରି ଥିଲା ତାହାକୁ ଏହି ପୁସ୍ତକରେ ଦୁଇ ଭାଗରେ ବିଭକ୍ତ କରାଯାଇଅଛି ; ଯଥା—

(କ) ରାଜନୈତିକ ଅବସ୍ଥା ।

(ଖ) ସାମାଜିକ ଅବସ୍ଥା ।

---

# ୧ମ ଅଧ୍ୟାୟ ।

## ବୈଦିକ ଯୁଗ ।

### (କ) ରାଜନୈତିକ ଅବସ୍ଥା ।

ଏହି ଯୁଗରେ ଭାରତର ରାଜନୈତିକ ଅବସ୍ଥା କିପରି ଥିଲା ତାହାର

ସବିଶେଷ ବିବରଣ କୌଣସି ଇତିହାସରେ ଦିଆ ନାହିଁ । କେବଳ ଭାରତୀୟ ଆର୍ଯ୍ୟମାନଙ୍କ ରଚିତ ବେଦ, ରାମାୟଣ, ମହାଭାରତ ଏବଂ ମନୁସଂହିତା ପ୍ରଭୃତି ଗ୍ରନ୍ଥମାନଙ୍କଠାରୁ ସେ ସମୟର ବିବରଣ ଯାହା ମିଳେ ତାହାହିଁ ତଳେ ଲେଖାଗଲା ।

ଋକ୍‌ବେଦରୁ ଜଣାଯାଏ ଯେ, ଆର୍ଯ୍ୟମାନେ ପ୍ରଥମେ ଭାରତକୁ ଆସି ସରସ୍ୱତୀ ଓ ଦୃଷଦ୍ୱତୀ ନଦୀଦ୍ୱୟର ମଧ୍ୟବର୍ତ୍ତୀ ପ୍ରଦେଶ ଅର୍ଥାତ୍ ଆଧୁନିକ ପଞ୍ଜାବରେ ବାସ କରିଥିଲେ । ଏହାକୁ ସେତେବେଳେ ବ୍ରହ୍ମାବର୍ତ୍ତ କୁହାଯାଉଥିଲା । କୁରୁକ୍ଷେତ୍ର, ପଞ୍ଚାଳ ଏବଂ ସୁରସେନ ପ୍ରଭୃତି ବ୍ରହ୍ମାବର୍ତ୍ତର ପୂର୍ବବର୍ତ୍ତୀ ସ୍ଥାନମାନ ତତ୍ପରେ ଆର୍ଯ୍ୟବସତିର ସ୍ଥଳ ହେଲା, ତାହାକୁ ବ୍ରହ୍ମର୍ଷି ପ୍ରଦେଶ କୁହାଯାଉଥିଲା । ଉତ୍ତରରେ ହିମାଳୟ, ଦକ୍ଷିଣେ ବିନ୍ଧ୍ୟ ପର୍ବତ, ପୂର୍ବେ ସରସ୍ୱତୀ ନଦୀ ଏବଂ ପଶ୍ଚିମେ ପ୍ରୟାଗ, ଏହି ପ୍ରଦେଶକୁ ମଧ୍ୟଦେଶ କୁହାଯାଉଥିଲା ବୋଲି ମନୁସଂହିତାରେ ଲିଖିତ ଅଛି । ବ୍ରହ୍ମର୍ଷି ପ୍ରଦେଶ ପରେ ମଧ୍ୟପ୍ରଦେଶରେ ଆର୍ଯ୍ୟମାନେ ବସତି ସ୍ଥାପନ କରିଥିଲେ । ଏହି ସମୟରେ ଅନ୍ୟାନ୍ୟ ସମସ୍ତ ପ୍ରଦେଶକୁ ମ୍ଳେଚ୍ଛଦେଶ ବୋଲି କୁହାଯାଉଥିଲା ; ଏବଂ ତହିଁରେ ଅନେକ ଅନାର୍ଯ୍ୟ ବାସ କରୁଥିଲେ । କାଳକ୍ରମେ ସମସ୍ତ ଉତ୍ତର-ଭାରତ ଅର୍ଥାତ୍ ହିମାଳୟ ଓ ବିନ୍ଧ୍ୟ ଏହି ଦୁଇ ପର୍ବତର ମଧ୍ୟବର୍ତ୍ତୀ ସ୍ଥାନ ଆର୍ଯ୍ୟାବର୍ତ୍ତ ନାମରେ ଅଭିହିତ ହୋଇ ତହିଁରେ ଆର୍ଯ୍ୟମାନେ ବାସ କଲେ । ସେତେବେଳକୁ ମନୁସଂହିତା ତାହାର ଆଧୁନିକ ଅବୟବ ପ୍ରାପ୍ତ ହୋଇ ନ ଥିଲା, ଅର୍ଥାତ୍ ସମ୍ପୂର୍ଣ୍ଣରୂପେ ଲେଖା ସରି ନ ଥିଲା ।

ଆର୍ଯ୍ୟମାନଙ୍କର ଦାକ୍ଷିଣାତ୍ୟଗମନ—କଥିତ ଅଛି ଆର୍ଯ୍ୟଋଷି ଅଗସ୍ତି ସର୍ବପ୍ରଥମେ ଦାକ୍ଷିଣାତ୍ୟକୁ ଗମନ କରିଥିଲେ । ବ୍ରାହ୍ମଣବୀର ପରଶୁରାମ ମାଲବର ଉପକୂଳରେ ବସତି ସ୍ଥାପନ କରିଥିବାର ମଧ୍ୟ ରାମାୟଣରୁ ଜଣାଯାଏ । ରାମାୟଣ ଓ ମହାଭାରତ ମଧ୍ୟରୁ ବିଶେଷତଃ ରାମାୟଣରେ

ଆର୍ଯ୍ୟମାନଙ୍କର ଦାକ୍ଷିଣାତ୍ୟଗମନ ବିଷୟ ବିଶେଷରେ ବର୍ଣ୍ଣିତ ଅଛି । ଦାକ୍ଷିଣାତ୍ୟରେ ବିଦର୍ଭ, ଯାହାକୁ ବର୍ତ୍ତମାନ ବେରାର କହନ୍ତି ତାହା ଆର୍ଯ୍ୟମାନଙ୍କର ପ୍ରଥମ ବସତି-ସ୍ଥଳ ଥିଲା । ଦଣ୍ଡକାରଣ୍ୟ ବା ମହାରାଷ୍ଟ୍ର ପ୍ରଦେଶ ତତ୍ପରବର୍ତ୍ତୀ ଆର୍ଯ୍ୟୋପନିବେଶର ସ୍ଥଳ ।

ବେଦପରେ ବ୍ରାହ୍ମଣ ବୋଲି ଏକ ଗ୍ରନ୍ଥ ଆର୍ଯ୍ୟମାନେ ଲେଖିଥିଲେ । ତହିଁରୁ ଜଣାପଡ଼େ ଯେ, ଆର୍ଯ୍ୟମାନେ ସରସ୍ୱତୀ ନଦୀର କୂଳରୁ ଦକ୍ଷିଣ-ପୂର୍ବ ଆଡ଼କୁ ଆସିଥିଲେ, ଏବଂ ଅବଶେଷରେ ସମସ୍ତ ଆର୍ଯ୍ୟାବର୍ତ୍ତରେ ସେମାନେ ବସତି କରିଥିଲେ । ସେତେବେଳେ ଉତ୍ତର ଭାରତ ଅନେକ କ୍ଷୁଦ୍ର କ୍ଷୁଦ୍ର ଆର୍ଯ୍ୟ-ଉପନିବେଶ ବା ରାଜ୍ୟରେ ବିଭକ୍ତ ହୋଇଥିଲା । ସେମାନଙ୍କର ନାମ ଯଥା—କୁରୁକ୍ଷେତ୍ର, ପଞ୍ଚାଳ, ସୁରସେନ, ମତ୍ସ୍ୟ, କୋଶଳ, କାଶୀ, ବିଦେହ, ମଗଧ, ଅଙ୍ଗ, ବଙ୍ଗ ଓ କଳିଙ୍ଗ । କୌଣସି କୌଣସି ଇତିହାସବେତ୍ତା ଏହି ରାଜ୍ୟମାନଙ୍କର ଆଧୁନିକ ନାମ ନିମ୍ନଲିଖିତରୂପେ ଯଥାକ୍ରମେ ନିର୍ଦ୍ଦେଶ କରିଅଛନ୍ତି ; ଯଥା—କର୍ଣ୍ଣାଲ, ରୋହିଲଖଣ୍ଡ, ମଥୁରା, ଜୟପୁର, ଅଯୋଧ୍ୟା, ବନାରସ, ଉତ୍ତର ବିହାର, ଦକ୍ଷିଣ ବିହାର, ପୂର୍ବ ବିହାର, ବଙ୍ଗଳା ଏବଂ ଉତ୍କଳ । ମାତ୍ର ଆଧୁନିକ ନାମବିଶିଷ୍ଟ ସ୍ଥାନମାନଙ୍କର ଆୟତନ ଯେତେ, ପୂର୍ବକାଳୀନ ରାଜ୍ୟଗୁଡ଼ିକର ଆୟତନ ଯେ ସେତିକି ଥିଲା ଏହା କେହି ଠିକ୍‌ରୂପେ କହି ପାରିବେ ନାହିଁ ।

---

## ୭ମ ଅଧ୍ୟାୟ ।

### ବୈଦିକ ଯୁଗ ।

### (ଖ) ସାମାଜିକ ଅବସ୍ଥା ।

ପଞ୍ଜାବ ପ୍ରଦେଶରେ ବସତି କରିବା ସମୟରେ ଆର୍ଯ୍ୟମାନଙ୍କର

ମନର ବଳ ଅତ୍ୟନ୍ତ ପ୍ରଖର ଥିଲା । ଏହି ସମୟରେ ସେମାନେ ଋକ୍-ବେଦ ରଚନା କରିଥିଲେ । ଋକ୍‌ବେଦ ଆର୍ଯ୍ୟଋଷିମାନଙ୍କ ମୁଖନିଃସୃତ ଈଶ୍ୱର-ସ୍ତୋତ୍ର-ସମଷ୍ଟି । ତତ୍ପରେ ସାମ, ଯଜୁଃ ଏବଂ ଅଥର୍ବ ନାମକ ଆଉ ତିନଗୋଟି ବେଦ ରଚିତ ହୋଇଥିଲା । ବେଦପରେ ବ୍ରାହ୍ମଣ ରଚିତ ହୋଇଥିଲା । ବ୍ରାହ୍ମଣମାନଙ୍କରେ ବେଦର ସମାଲୋଚନା ଗଦ୍ୟରେ ଲେଖାଅଛି । ବେଦ ରଚିତ ହେବା ସମୟରେ ଆର୍ଯ୍ୟମାନେ ଲିଖନ ରୀତି ଜାଣି ନ ଥିଲେ । ସେହି ହେତୁରୁ ବେଦକୁ ଶୁଣି ଶୁଣି କଣ୍ଠସ୍ଥ କରିବାକୁ ପଡ଼ୁଥିଲା । ମାତ୍ର ସେତେବେଳେ ଆର୍ଯ୍ୟମାନଙ୍କର ସ୍ମରଣଶକ୍ତି ଏତେ ଅଧିକ ଥିଲା ଯେ, ଅନେକ ହଜାର ବର୍ଷପରେ ବେଦ ଲିଖିତ ହେଲେହେଁ ତାହାର ପୂର୍ବବିଶୁଦ୍ଧତା ବିଲୁପ୍ତ ହୋଇ ନ ଥିଲା । ଶୁଣିକରି କଣ୍ଠସ୍ଥ କରିବାକୁ ହେଉଥିଲା ବୋଲି ବେଦର ଅନ୍ୟ ନାମ ଶ୍ରୁତି ।

ଭାରତୀୟ ଆର୍ଯ୍ୟ ବା ହିନ୍ଦୁମାନେ ଆଦ୍ୟରୁ ବିଦ୍ୟାଚର୍ଚ୍ଚା କରିଥିଲେ । ସେମାନଙ୍କର ବ୍ୟବସ୍ଥା, ଧର୍ମ୍ମ, ଦର୍ଶନ, ଜ୍ୟୋତିଷ, ବ୍ୟାକରଣ ଏବଂ ଭାଷା-ତତ୍ତ୍ୱର ଗ୍ରନ୍ଥମାନ ପଢ଼ିଲେ ସେମାନଙ୍କ ବିଦ୍ୟୋନ୍ନତିର ବିଶେଷ ପରିଚୟ ମିଳେ । ଉପନିଷଦ୍ ସେମାନଙ୍କ ଧର୍ମ୍ମର ବୈଜ୍ଞାନିକ ଆଲୋଚନା । ବେଦାଙ୍ଗମାନଙ୍କରେ ବ୍ୟବସ୍ଥା, ବ୍ୟାକରଣ, ଭାଷାତତ୍ତ୍ୱ ଏବଂ ଜ୍ୟୋତିଃ-ଶାସ୍ତ୍ରର ଆଲୋଚନା ଅଛି । କଳ୍ପସୂତ୍ରରେ ବ୍ୟବସ୍ଥା-ବିଷୟ, ପାଣିନିଙ୍କ ଗ୍ରନ୍ଥାବଳୀରେ ବ୍ୟାକରଣ, ଯାସ୍କପ୍ରଣୀତ ନିରୁକ୍ତଗ୍ରନ୍ଥରେ ଭାଷାତତ୍ତ୍ୱ ବିଶେଷରୂପେ ଆଲୋଚିତ ହୋଇଅଛି । ପରାଶର ନାମକ ଏକ ଜ୍ୟୋତି-ର୍ବିଦ୍ ପଣ୍ଡିତ ଜ୍ୟୋତିଃଶାସ୍ତ୍ର ସମ୍ବନ୍ଧରେ ଗ୍ରନ୍ଥମାନ ଲେଖିଯାଇଅଛନ୍ତି ।

ହିନ୍ଦୁମାନେ ଅଙ୍କଶାସ୍ତ୍ରରେ ବିଶେଷ ଖ୍ୟାତି ଲଭିଥିଲେ । ଦଶମିକ ରୀତିରେ ଅଙ୍କ-ଲିଖନପ୍ରଣାଳୀ ଏମାନଙ୍କ ଦ୍ୱାରା ଉଦ୍ଭାବିତ ହୋଇଥିଲା । ପ୍ରାଚୀନ କାଳରୁ ଭାରତରେ ଜ୍ୟାମିତି ଓ ବୀଜଗଣିତର ଆଲୋଚନା

ଚାଲିଆସୁଅଛି । ସଙ୍ଗୀତଶାସ୍ତ୍ର ମଧ୍ୟ ହିନ୍ଦୁମାନଙ୍କ ଦ୍ୱାରା ଆଲୋଚିତ ହୋଇଥିଲା । ହିନ୍ଦୁମାନେ ଚିକିତ୍ସାବିଦ୍ୟାରେ ଅସାଧାରଣ ପାରଦର୍ଶିତା ଲାଭ କରିଥିଲେ । ଧାତୁଦ୍ରବ୍ୟ ସେବନ କରାଇ ପୀଡ଼ା ଆରୋଗ୍ୟ କରିବା ହିନ୍ଦୁମାନଙ୍କର ଆବିଷ୍କୃତ ଅଟେ । ବସନ୍ତରୋଗ ନିବାରଣ ସକାଶେ ଟିକା ପ୍ରଦାନ କରିବା ପ୍ରଥା ପୂର୍ବକାଳରୁ ଭାରତବର୍ଷରେ ପ୍ରଚଳିତ ଅଛି । ଗୋବୀଜଟିକା ପ୍ରଦାନ କରିବା ବିଷୟ ମଧ୍ୟ ସେମାନଙ୍କୁ ଜଣାଥିଲା ।

ଆର୍ଯ୍ୟମାନେ ସିନ୍ଧୁକୂଳରେ ବାସ କରୁଥିଲାବେଳେ ନାନା ସମ୍ପ୍ରଦାୟରେ ବିଭକ୍ତ ହୋଇଥିଲେ । ସେମାନେ କେତେବେଳେ ଆପଣା ମଧ୍ୟରେ, କେତେବେଳେ ଅବା ଏକତ୍ରିତ ହୋଇ ଆଦିମନିବାସୀଙ୍କ ସଙ୍ଗେ ଯୁଦ୍ଧରେ ବ୍ୟାପୃତ ହେଉଥିଲେ । ସେ ସମୟରେ ଜାତିବିଭାଗ ନ ଥିଲା । ପିତା ନିଜ ପରିବାର ନିମନ୍ତେ ପୁରୋହିତର କାର୍ଯ୍ୟ କରୁଥିଲେ । ଦଳପତି ନିଜ ଜାତିର ପୁରୋହିତ ଥିଲେ । ରମଣୀମାନେ ଅତ୍ୟନ୍ତ ସମ୍ମାନ ପାଉଥିଲେ ।

ଏହି ଯୁଗର ମଧ୍ୟଭାଗରେ ମନୁସଂହିତା ଏବଂ ରାମାୟଣ ଓ ମହାଭାରତ ନାମକ ମହାକାବ୍ୟଦ୍ୱୟ ରଚିତ ହୋଇଥିଲା । ମନୁସଂହିତାରେ ହିନ୍ଦୁମାନଙ୍କର ସାମାଜିକ ଓ ରାଜନୈତିକ ବ୍ୟବସ୍ଥାମାନ ଅଛି । ବାଲ୍ମୀକି ରାମାୟଣ ଓ ବ୍ୟାସଦେବ ମହାଭାରତ ଲେଖିଥିଲେ । ଏହି ଦୁଇ ମହାକାବ୍ୟରେ ସେସମୟର ଇତିହାସ ଓ ହିନ୍ଦୁମାନଙ୍କର ସାମାଜିକ ଓ ରାଜନୈତିକ ଅବସ୍ଥା ବିସ୍ତୃତଭାବରେ ଲିଖିତ ଅଛି ।

ପୁରାକାଳରେ ହିନ୍ଦୁମାନଙ୍କର ସାମାଜିକ ଓ ରାଜନୈତିକ ଜୀବନ:— ଋକ୍‌ବେଦ ରଚିତ ହେବା ସମୟରେ ହିନ୍ଦୁମାନଙ୍କ ମଧ୍ୟରେ ଜାତିବିଭାଗ ନ ଥିଲା । ସ୍ତ୍ରୀଲୋକମାନେ ଶିକ୍ଷା ପ୍ରାପ୍ତ ହୋଇ ବିଶେଷ ମର୍ଯ୍ୟାଦା ଲଭୁଥିଲେ । ଲୋକେ ସରଳଭାବରେ ଜୀବନ ଯାପନ କରୁଥିଲେ । କୃଷି ସେମାନଙ୍କର ପ୍ରଧାନ ବ୍ୟବସାୟ ଥିଲା, ଆଉ ଗୋରୁ ସେମାନଙ୍କର ପ୍ରଧାନ ସମ୍ପତ୍ତିରୂପେ

ଗଣ୍ୟ ହେଉଥିଲା । ଋକ୍‌ବେଦରେ କମାର, କୁମ୍ଭାର, ଥଟାରି, ସୁନାରି, ବଢ଼େଇ, ନାପିତ, ତନ୍ତ୍ରୀ, ବୈଦ୍ୟ, କବି ପ୍ରଭୃତି ବ୍ୟବସାୟୀ-ମାନଙ୍କର ଉଲ୍ଲେଖ ଅଛି । ଆର୍ଯ୍ୟମାନେ ସୋମରସ ନାମକ ମାଦକଦ୍ରବ୍ୟ ପ୍ରସ୍ତୁତ କରି ପାନ କରୁଥିଲେ ଏବଂ ତାହା ଦେବତାମାନଙ୍କୁ ମଧ୍ୟ ଅର୍ପଣ କରୁଥିଲେ । ଆର୍ଯ୍ୟମାନେ ଗ୍ରାମ ନିର୍ମାଣ କରି ବାସ କରୁଥିଲେ । ଆଜିକାଲି ଯେପରି ନଗରମାନ ଦେଖାଯାଏ ସେପରି ନଗରମାନ ସେ ସମୟରେ ନ ଥିଲା; କିନ୍ତୁ ପ୍ରାଚୀରବେଷ୍ଟିତ ଦୁର୍ଗମାନଙ୍କର ଅଭାବ ନ ଥିଲା । ପ୍ରତ୍ୟେକ ପରିବାରର ଗୋଟିଏ ଲେଖାଏ ଘର ଥିଲା; ଏବଂ ଗ୍ରାମମଧ୍ୟରେ ଅନେକ-ଗୁଡ଼ିଏ ପରିବାର ବାସ କରୁଥିଲେ । କେତେଗୁଡ଼ିଏ ଗ୍ରାମ ମିଳି ଗୋଟିଏ ଗୋଷ୍ଠୀ ଗଠିତ ହେଉଥିଲା; ଏବଂ ପ୍ରତ୍ୟେକ ଗୋଷ୍ଠୀ ଜଣେ ଜଣେ ରାଜା-ଦ୍ୱାରା ଶାସିତ ହେଉଥିଲା । ରାଜାମାନେ ସ୍ୱର୍ଣ୍ଣଭୂଷିତ ପରିଚ୍ଛଦ ଓ ଅଳଙ୍କାର ପରିଧାନ କରି ମନ୍ତ୍ରି-ବେଷ୍ଟିତ ହୋଇ ରାଜକାର୍ଯ୍ୟ ନିର୍ବାହ କରୁଥିଲେ । ନଗର ଓ ଗ୍ରାମମାନଙ୍କର ରକ୍ଷାନିମନ୍ତେ ରାଜାଙ୍କ ଅଧୀନରେ ରକ୍ଷକମାନେ ନିଯୁକ୍ତ ହେଉଥିଲେ । ଯୋଦ୍ଧାମାନେ ବର୍ମ୍ମ ଧାରଣ କରି ଧନୁର୍ବାଣହସ୍ତରେ ଯୁଦ୍ଧକୁ ଯାଉଥିଲେ । ଯୁଦ୍ଧରେ ପତାକା ବ୍ୟବହୃତ ହେଉଥିଲା । ରାଜାମାନେ ସ୍ୱୟଂ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ଥାଇ ଯୁଦ୍ଧ କରୁଥିଲେ ।

ପୁରାକାଳର ଧର୍ମ୍ମପ୍ରଣାଳୀ :—"ଈଶ୍ୱର ଏକ", ଏହି ଭାବ ଯେ ହିନ୍ଦୁ-ମାନଙ୍କର ମନରେ ସ୍ଥାନ ପାଇଥିଲା ଏହା ଋକ୍‌ବେଦରୁ ସ୍ପଷ୍ଟ ଜଣାଯାଏ; କାରଣ ଋକ୍‌ବେଦର କେତେକ ଶ୍ଳୋକ ଏକଈଶ୍ୱର ଉଦ୍ଦେଶ୍ୟରେ ଲିଖିତ ହୋଇଅଛି । ବୈଦିକ କାଳର ହିନ୍ଦୁମାନେ ପ୍ରକୃତିର ସୁନ୍ଦର ସୁନ୍ଦର ବସ୍ତୁ, ଆଉ ଇନ୍ଦ୍ର, ଅଗ୍ନି, ମରୁତ୍, ବରୁଣ, ବ୍ରହ୍ମା, ବିଷ୍ଣୁ ପ୍ରଭୃତି ଦେବମାନଙ୍କୁ ପୂଜା କରୁଥିଲେ । ସେମାନଙ୍କର ପୂଜାପଦ୍ଧତି ଅତ୍ୟନ୍ତ ସରଳ ଥିଲା । ସ୍ତୁତି-ପାଠ ଓ ସୋମରସ-ଅର୍ପଣ ଆଉ ସମୟେ ସମୟେ

ଛେଳି, ମେଣ୍ଢା ଓ ଘୋଡ଼ା ପ୍ରଭୃତି ପଶୁମାନଙ୍କର ବଳିଦାନ ସେମାନଙ୍କ ପୂଜାର ପ୍ରଧାନ ଅଙ୍ଗ ଥିଲା, କିନ୍ତୁ ପରବର୍ତ୍ତୀ କାଳରେ ଏହି ପୂଜାର ସରଳତା କ୍ରମଶଃ ଲୁପ୍ତ ହୋଇ ତାହା ଆଡ଼ମ୍ବରରେ ପରିଣତ ହୋଇଥିଲା । ଆର୍ଯ୍ୟମାନେ ପରଲୋକରେ ସଦ୍ଗତି ଲାଭ କରିବା ଏବଂ ଦେବତାମାନଙ୍କର ପ୍ରୀତି ଲାଭ କରିବା ଅଭିପ୍ରାୟରେ ନାନାପ୍ରକାର ଯଜ୍ଞ କରୁଥିଲେ । ଏହି କାଳରେ ଦୁଇପ୍ରକାରେ ଯଜ୍ଞକାର୍ଯ୍ୟମାନ ସମାହିତ ହେଉଥିଲା— ଦହି, ଦୁଧ, ଘିଅ, ପିଠା, ଆହୁତି ଦେଇ ଏକପ୍ରକାର ଏବଂ ସୋମରସ ଆହୁତି ଦେଇ ଅନ୍ୟପ୍ରକାର ଯଜ୍ଞ କରାଯାଉଥିଲା । ପ୍ରଥମଶ୍ରେଣୀୟ ଯଜ୍ଞର ନାମ ହବି-ର୍ଯଜ୍ଞ ଓ ଦ୍ୱିତୀୟଶ୍ରେଣୀ ଯଜ୍ଞର ନାମ ସୋମଯଜ୍ଞ ଅଟେ ।

ପୂର୍ବକାଳର ହିନ୍ଦୁମାନଙ୍କର ଆଦର୍ଶଜୀବନ :—ପୂର୍ବକାଳରେ ହିନ୍ଦୁମାନେ ସତ୍ୟପରାୟଣତା ଓ କର୍ତ୍ତବ୍ୟପରାୟଣତାକୁ ବହୁମୂଲ୍ୟ ବସ୍ତୁ ବୋଲି ଜ୍ଞାନ କରୁଥିଲେ । ସେମାନେ ଅତିଥି-ସତ୍କାରରେ ବିଶେଷ ତତ୍ପର ଥିଲେ ଏବଂ ଅଙ୍ଗୀକାର-ରକ୍ଷା ଓ ଚୁକ୍ତି-ପାଳନକୁ ବିଶେଷ ଧର୍ମ୍ମ ବୋଲି ମଣୁଥିଲେ । ପିଲାମାନଙ୍କୁ ଅଜିକାଲିର ଟୋଲପଦ୍ଧତି ଅନୁସାରେ ଅତ୍ୟନ୍ତ ଯତ୍ନସହି ଶିକ୍ଷା ଦିଆଯାଉଥିଲା । ଲୋକେ ସରଳ, ସତ୍ୟବାଦୀ ଓ ନିୟମାବଦ୍ଧ ଥିଲେ । ବ୍ରାହ୍ମଣର ସମସ୍ତ ଜୀବନ କଠୋର ନିୟମାବଦ୍ଧ ଥିଲା । କଳ୍ପସୂତ୍ର ଅନୁସାରେ ବ୍ରାହ୍ମଣଜୀବନ ଚାରିଭାଗରେ ବିଭକ୍ତ ଥିଲା— ୧ ବ୍ରହ୍ମଚର୍ଯ୍ୟ, ୨ ଗାର୍ହସ୍ଥ୍ୟ, ୩ ବାନପ୍ରସ୍ଥ ଓ ୪ ଯତିବ୍ରତ । ବ୍ରହ୍ମଚର୍ଯ୍ୟାବସ୍ଥାରେ ବ୍ରାହ୍ମଣମାନେ ସଂସାରର ସୁଖଭୋଗରୁ ବିରତ ହୋଇ କଠୋର ନିୟମମାନ ପାଳନ କରି ଗୁରୁପାଖରୁ ଶିକ୍ଷା ପ୍ରାପ୍ତ ହେଉଥିଲେ । ଦ୍ୱିତୀୟାବସ୍ଥାରେ ସେମାନେ ବିବାହ କରୁଥିଲେ ; କିନ୍ତୁ ସଂସାରର ଆମୋଦ ପ୍ରମୋଦରେ ରତ ହେଉ ନ ଥିଲେ ; ସେମାନେ ଧର୍ମ୍ମକାର୍ଯ୍ୟ ଓ ବେଦପାଠରେ ସମୟ କଟାଉଥିଲେ । ତୃତୀୟାବସ୍ଥାରେ ସେମାନେ ସଂସାର

ପରିତ୍ୟାଗ କରି ବନକୁ ଗମନ କରୁଥିଲେ ଏବଂ ସେଠାରେ ଫଳମୂଳ ଖାଇ ଅତ୍ୟନ୍ତ କଷ୍ଟ ସ୍ୱୀକାର କରି ଧର୍ମ୍ମକାର୍ଯ୍ୟ କରୁଥିଲେ । ଶେଷାବସ୍ଥାରେ ସେମାନେ ଧର୍ମ୍ମଚିନ୍ତା ଓ ତପସ୍ୟାରେ ମଗ୍ନ ହେଉଥିଲେ ।

ଜାତିବିଭାଗ :—ମନୁସଂହିତା ଯେଉଁ ସମୟରେ ଲେଖାଯାଇଥିଲା ସେ ସମୟକୁ ହିନ୍ଦୁମାନଙ୍କ ମଧ୍ୟରେ ଜାତିବିଭାଗ ପ୍ରଚଳିତ ହୋଇଥିଲା । ମହାକାବ୍ୟଦ୍ୱୟ ଯେଉଁ ସମୟରେ ପ୍ରଣୀତ ହୋଇଥିଲା, ସେହି ସମୟରେ ହିନ୍ଦୁମାନଙ୍କର ସାମାଜିକ ଅବସ୍ଥାରେ ବିଶେଷ ପରିବର୍ତ୍ତନ ଘଟିଥିଲା । ହିନ୍ଦୁମାନଙ୍କର ବଂଶବୃଦ୍ଧି ହେବା ସଙ୍ଗେ ସଙ୍ଗେ କାର୍ଯ୍ୟବିଭାଗର ପ୍ରଥା ଆରମ୍ଭ ହୋଇଥିଲା । ଏହି କାର୍ଯ୍ୟବିଭାଗରୁ ଜାତିବିଭାଗ ସୃଷ୍ଟି ହୋଇଥିଲା । ସର୍ବପ୍ରଥମେ ଭାରତବାସୀମାନଙ୍କ ମଧ୍ୟରେ ଦୁଇଗୋଟି ବିଭାଗ ଥିଲା । ଯଥା—ଆର୍ଯ୍ୟ ଓ ଅନାର୍ଯ୍ୟ । କ୍ରମେ ଏହି ଦୁଇ ବିଭାଗ ଚାରି ଭାଗରେ ପରିଣତ ହୋଇଥିଲା, ଯଥା—ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର । ଯେଉଁ ଆର୍ଯ୍ୟମାନଙ୍କର ମାନସିକ ବୃତ୍ତି ଅତ୍ୟନ୍ତ ପ୍ରଖର ଥିଲା ଏବଂ ଯେଉଁମାନେ ବେଦ ଓ ସ୍ତୋତ୍ରମାନ ମୁଖସ୍ଥ କରିପାରୁଥିଲେ ସେମାନେ ଧର୍ମ୍ମକାର୍ଯ୍ୟରେ ନିଯୁକ୍ତ ହେଲେ, ସେମାନଙ୍କ ବ୍ରାହ୍ମଣ କୁହାଗଲା । ଯେଉଁ ଆର୍ଯ୍ୟମାନେ ବଳବାନ ହୋଇ ଅସ୍ତ୍ରଶସ୍ତ୍ର-ଚାଳନାରେ ନିପୁଣ ହୋଇଥିଲେ, ସେମାନେ ଯୁଦ୍ଧକାର୍ଯ୍ୟରେ ନିଯୁକ୍ତ ହେଲେ, ସେମାନଙ୍କୁ କ୍ଷତ୍ରିୟ କୁହାଗଲା । ଅନ୍ୟାନ୍ୟ ଯେଉଁ ଆର୍ଯ୍ୟମାନେ କୃଷି ବାଣିଜ୍ୟରେ ପ୍ରବୃତ୍ତ ହୋଇଥିଲେ, ସେମାନଙ୍କୁ ବୈଶ୍ୟ କୁହାଗଲା । ଯେଉଁ ଅନାର୍ଯ୍ୟମାନେ ଆର୍ଯ୍ୟମାନଙ୍କର ବଶ୍ୟତା ସ୍ୱୀକାର କଲେ ସେମାନଙ୍କୁ ଶୂଦ୍ର କୁହାଗଲା । ଏହି ଚାରି ଜାତି-ମଧ୍ୟରେ ବ୍ରାହ୍ମଣମାନେ ଶୀଘ୍ର ଶ୍ରେଷ୍ଠତ୍ୱ ଲାଭ କଲେ ଏବଂ ସେମାନେ ଧର୍ମ୍ମ, ବ୍ୟବସ୍ଥା ଓ ଶାସନ କାର୍ଯ୍ୟରେ କ୍ଷତ୍ରିୟମାନଙ୍କୁ ପରାମର୍ଶ ଦେଲେ । କ୍ଷତ୍ରିୟମାନେ ଦ୍ୱିତୀୟ ସ୍ଥାନ ଅଧିକାର କରି ଦେଶରକ୍ଷା ଓ ଦେଶଶାସନର

ଭାର ଗ୍ରହଣ କଲେ । ଶୂଦ୍ରମାନେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କର ସେବା କରି ଜୀବନଧାରଣ କଲେ । ପ୍ରଥମେ ଜାତିବିଭାଗ ବ୍ୟକ୍ତିଗତ ଥିଲା । ପଛକୁ ପୁରୁଷାନୁକ୍ରମିକ ହୋଇ ଭିନ୍ନ ଭିନ୍ନ ପରିବାର-ଗତ ହେଲା ।

ଅଶ୍ୱମେଧ ଯଜ୍ଞ ।—ଏହି ଯଜ୍ଞକୁ ରାଜଚକ୍ରବର୍ତ୍ତୀ ଛଡ଼ା ଆଉ କାହାର କରିବାର ଅଧିକାର ନ ଥିଲା । ଅଶ୍ୱ ଏହି ଯଜ୍ଞର ପ୍ରଧାନ ପଶୁ ଅଟେ । ବେଦ-ମନ୍ତ୍ରରେ ଗୋଟିଏ ଅଶ୍ୱକୁ ସଂସ୍କାର କରି ଯଥେଚ୍ଛାଭ୍ରମଣ ସକାଶେ ଛଡ଼ିଦିଆଯାଉଥିଲା । ଅଶ୍ୱରକ୍ଷା ସକାଶେ ରାଜପୁତ୍ରମାନେ ସସୈନ୍ୟରେ ତାହାର ଅନୁଗମନ କରୁଥିଲେ । ପରରାଜ୍ୟର ଅଧିପତି ଅଶ୍ୱକୁ ଧରି ରଖିଲେ, ରକ୍ଷକମାନେ ତାକୁ ଯୁଦ୍ଧରେ ପରାସ୍ତ କରି ଅଶ୍ୱକୁ ଉଦ୍ଧାର କରୁଥିଲେ । ରାଜପୁତ୍ରମାନେ ଅଶ୍ୱକୁ ନାନା ସ୍ଥାନରେ ବୁଲାଇ ଏକବର୍ଷମଧ୍ୟରେ ପୁଣି ଯଜ୍ଞସ୍ଥଳକୁ ଘେନି ଆସୁଥିଲେ । ଅଶ୍ୱ ଫେରିଆସିଲେ ତାହାକୁ ବଧକରି ହୋମକାର୍ଯ୍ୟ ସମାପନ କରାଯାଉ-ଥିଲା । ପ୍ରବଳ ପରାକ୍ରାନ୍ତ ରାଜାଧିରାଜ ବ୍ୟତୀତ ଆଉ କେହି ଏହି ଯଜ୍ଞ କରିପାରୁ ନ ଥିଲେ ।

ରାଜସୂୟ ଯଜ୍ଞ ।—ଗୁଣବାନ୍ ଓ ଧନବାନ୍ କ୍ଷତ୍ରିୟ ରାଜା ବ୍ୟତୀତ ଅନ୍ୟ କେହି ରାଜସୂୟ ଯଜ୍ଞ କରିପାରୁ ନ ଥିଲେ । ପ୍ରାଚୀନକାଳରେ ରାଜାମାନେ ଏହି ଯଜ୍ଞ କରି ରାଜଚକ୍ରବର୍ତ୍ତୀ ଉପାଧି ଧାରଣ କରୁଥିଲେ । ଅଭିଷେକଉତ୍ତାରୁ ରାଜାଙ୍କର କୌଣସି ଶତ୍ରୁ ଥିଲେ ସେ ତାଙ୍କ ରାଜ୍ୟକୁ ସସୈନ୍ୟରେ ଗମନ କରୁଥିଲେ ; ଏବଂ ଯୁଦ୍ଧରେ ଶତ୍ରୁ ଜୟକରି ମହା-ସମାରୋହରେ ନିଜ ରାଜଧାନୀକୁ ଫେରିଆସୁଥିଲେ । ଏହି ଯଜ୍ଞରେ ବିଜିତ ରାଜାମାନଙ୍କୁ ଅଧୀନତା-ସୂଚକ କୌଣସି ନା କୌଣସି କାର୍ଯ୍ୟ କରିବାକୁ ହେଉଥିଲା ।

# ୩ୟ ଅଧ୍ୟାୟ ।

## ବୌଦ୍ଧ ଯୁଗ ।

### (କ) ରାଜନୈତିକ ଅବସ୍ଥା ।

ପୂର୍ବ ଗଳ୍ପରେ କୁହାଯାଇଅଛି ଯେ ଖ୍ରୀ : ପୂ : ଷଷ୍ଠ ଶତାବ୍ଦୀ ପୂର୍ବେ ଭାରତବର୍ଷ କିପରି ଶାସିତ ହେଉଥିଲା, ତାହାର ଐତିହାସିକ ବିବରଣ ନାହିଁ । ଖ୍ରୀ : ପୂ : ଷଷ୍ଠ ଶତାବ୍ଦୀ ପରେ ମଧ୍ୟ ଏଦେଶରେ ଲିଖିତ କୌଣସି ବିଶ୍ୱାସଯୋଗ୍ୟ ଇତିହାସ ନାହିଁ; ତଥାପି ବୌଦ୍ଧଧର୍ମଗ୍ରନ୍ଥ, ପାରସ୍ୟ-ଦେଶୀୟ ଇତିହାସ, ଗ୍ରୀକମାନଙ୍କ ଲିଖିତ ବିବରଣରୁ ଏ ସମୟର ଭାରତର ଅବସ୍ଥା ବିଷୟ ଯାହା ମିଳେ ତାହା ତଳେ ଲେଖାଗଲା ।

ଖ୍ରୀ : ପୂ : ୬ଷ୍ଠ ଶତାବ୍ଦୀରେ ମଗଧରେ ଶିଶୁନାଗ କର୍ତ୍ତୃକ ସ୍ଥାପିତ ଏକ ରାଜବଂଶ ରାଜତ୍ୱ କରୁଥିଲେ । ସେମାନଙ୍କର ରାଜଧାନୀ ରାଜଗୃହ ଥିଲା । ବିମ୍ବିସାର ଓ ତାଙ୍କର ପୁତ୍ର ଅଜାତଶତ୍ରୁ ଏହି ବଂଶର ରାଜା ଥିଲେ । ଏହି ଦୁଇ ରାଜାଙ୍କ ଅମଳରେ ବୁଦ୍ଧଦେବ ବୌଦ୍ଧଧର୍ମ ମଗଧରେ ପ୍ରଚାର କରିଥିଲେ । ଖ୍ରୀ : ପୂ : ଷଷ୍ଠ ଶତାବ୍ଦୀର ଶେଷଭାଗରେ ପାରସ୍ୟର ରାଜା ଡେରାୟୁସ୍ ଭାରତ ଆକ୍ରମଣ କରିଥିଲେ ।

ନନ୍ଦବଂଶ :—ଶିଶୁନାଗବଂଶପରେ ନନ୍ଦବଂଶ ମଗଧରେ ରାଜତ୍ୱ କରି-ଥିଲେ, (ଖ୍ରୀ : ପୂ : ୪ର୍ଥ ଶତାବ୍ଦୀ) । ଏମାନଙ୍କ ରାଜଧାନୀ ପାଟଳୀପୁତ୍ର (ପାଟନା) ଥିଲା । ମହାନନ୍ଦ ଏହି ବଂଶର ଶେଷ ରାଜା । ଏହାଙ୍କ ସମୟରେ ଗ୍ରୀକ-ବୀର ଅଲେକଜାଣ୍ଡର ଭାରତ ଆକ୍ରମଣ କରିଥିଲେ । (ଖ୍ରୀ : ପୂ : ୩୨୭) ।

ମୌର୍ଯ୍ୟବଂଶ :—ନନ୍ଦବଂଶ ଅନ୍ତେ ମୌର୍ଯ୍ୟବଂଶ ମଗଧରେ ରାଜତ୍ୱ କରିଥିଲେ । ଚନ୍ଦ୍ରଗୁପ୍ତ ଏହି ବଂଶର ସ୍ଥାପୟିତା । ସେ ଅତି ପରାକ୍ରମୀ ହୋଇ ସମସ୍ତ ଉତ୍ତର ଭାରତବର୍ଷରେ ନିଜ ରାଜ୍ୟ ବିସ୍ତାର କରିଥିଲେ ।



ବୁଦ୍ଧ ।

ଆଲେକ୍‌ଜାଣ୍ଡ୍ରରଙ୍କ ମୃତ୍ୟୁପରେ ତାଙ୍କ ରାଜ୍ୟ ତାଙ୍କ ସେନାପତିମାନଙ୍କ ମଧ୍ୟରେ ବିଭକ୍ତ ହୋଇଥିଲା । ସିଲିଉକସ୍ ନାମକ ଏକ ସେନାପତି

ଏସିଆଖଣ୍ଡର ରାଜ୍ୟ ପାଇଥିଲେ । ସେ ବକ୍ଟ୍ରିୟାରେ ଗୋଟିଏ ସାମ୍ରାଜ୍ୟ ସ୍ଥାପନ କରିଥିଲେ, ଏବଂ ତାହାକୁ ଏ ସମୟରେ ଭାରତ ଆଡ଼କୁ ବିସ୍ତାର କରିବାର ଚେଷ୍ଟା କରୁଥିଲେ; କିନ୍ତୁ ସେ ଚନ୍ଦ୍ରଗୁପ୍ତଙ୍କ ଦ୍ୱାରା ପରାଜିତ ହୋଇ ପଞ୍ଜାବ ପ୍ରଦେଶ ହରାଇଲେ । ସିଲିଉକସ୍ ଚନ୍ଦ୍ରଗୁପ୍ତଙ୍କ ସଙ୍ଗେ ସନ୍ଧି ସ୍ଥାପନ କରି ତାଙ୍କ ସଭାରେ ମେଗାସ୍ଥିନିସ୍ ନାମକ ଏକ ଦୂତ ରଖି-ଥିଲେ । ଚନ୍ଦ୍ରଗୁପ୍ତଙ୍କ ଅନ୍ତେ ଅଶୋକ ମଗଧର ରାଜା ହେଲେ । ଏହାଙ୍କ ଅମଳରେ ବୌଦ୍ଧଧର୍ମ୍ମ ଭାରତରେ ସର୍ବତ୍ର ପ୍ରଚଳିତ ହେଲା । ଏହାଙ୍କ ରାଜ୍ୟ ସମସ୍ତ ଉତ୍ତର-ଭାରତବର୍ଷ ଆଉ ଦାକ୍ଷିଣାତ୍ୟର ଅନେକ ଅଂଶରେ ବିସ୍ତୃତ ଥିଲା ।

ଭାରତରେ ବକ୍ଟ୍ରିୟାର ଗ୍ରୀକ:—ଅଶୋକଙ୍କ ଅନ୍ତେ ଛଅ ସାତ ଜଣ ରାଜା ମଗଧରେ ରାଜତ୍ୱ କରିଥିଲେ । ଏମାନେ ଅତ୍ୟନ୍ତ ଦୁର୍ବଳ ଥିବାରୁ ବକ୍ଟ୍ରିୟାର ଗ୍ରୀକ୍‌ମାନେ ଭାରତକୁ ଆସି କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସ୍ଥାପନ କରିଥିଲେ । କିନ୍ତୁ ଏହି ସମୟରେ ମଗଧରେ ପୁଷ୍ପମିତ୍ର ନାମକ ଏକ ରାଜା ପରାକ୍ରମୀ ହୋଇ ଏମାନଙ୍କର ରାଜ୍ୟବିସ୍ତାରରେ ବାଧା ଦେଇଥିଲେ ।

ମିତ୍ର-ବଂଶ ଓ କାନ୍ୱ-ବଂଶ:—ପୁଷ୍ପମିତ୍ର ମୌର୍ଯ୍ୟବଂଶର ଶେଷ ରାଜାଙ୍କୁ ହତ୍ୟା କରି ମଗଧରେ ମିତ୍ରବଂଶ ସ୍ଥାପନ କଲେ । ଏମାନେ ୧୧୨ ବର୍ଷ ରାଜତ୍ୱ କଲାପରେ କାନ୍ୱବଂଶ ମଗଧରେ ରାଜତ୍ୱ କଲେ । ଏମାନେ ୪୫ ବର୍ଷ ରାଜତ୍ୱ କଲାପରେ ଆନ୍ଧ୍ରବଂଶ ମଗଧ ଅଧିକାର କଲେ ।

ଆନ୍ଧ୍ରବଂଶ:—ଆନ୍ଧ୍ରବଂଶ ଦାକ୍ଷିଣାତ୍ୟର ମହାରାଷ୍ଟ୍ର ପ୍ରଦେଶରେ ରାଜତ୍ୱ କରୁଥିଲେ । ଦାକ୍ଷିଣାତ୍ୟରେ ମଧ୍ୟ ଉତ୍ତର ଭାରତବର୍ଷପରି ଅନେକ ରାଜ୍ୟ ଥିଲା । ଦାକ୍ଷିଣାତ୍ୟର ଦକ୍ଷିଣ ଭାଗରେ ଅତି ପୁରାକାଳରୁ ଚେର, ଚୋଳ ଏବଂ ପାଣ୍ଡ୍ୟ ନାମକ ତିନଗୋଟି ରାଜ୍ୟ ଥିଲା । ଚେର ଓ ଚୋଳ ଯଥାକ୍ରମେ ପଶ୍ଚିମ ଓ ପୂର୍ବ ପାଖର ସମୁଦ୍ରକୂଳରେ, ଆଉ ପାଣ୍ଡ୍ୟ ଏ

ଦୁହିଙ୍କର ମଧ୍ୟଭାଗରେ ଥିଲା । ତତ୍ପରେ ପଲ୍ଲବ ନାମକ ଏକ ରାଜ୍ୟ ଦାକ୍ଷିଣାତ୍ୟରେ ପରାକ୍ରମଶାଳୀ ହୋଇଥିଲା । ଏହାର ରାଜଧାନୀ କାଞ୍ଚି ଥିଲା । ଖ୍ରୀ: ପୂ: ୨ୟ ଶତାବ୍ଦୀର ପ୍ରଥମ ଭାଗରେ ମହାରାଷ୍ଟ୍ର ପ୍ରଦେଶରେ ଅନ୍ଧ୍ରମାନେ ଅତ୍ୟନ୍ତ ପରାକ୍ରମୀ ହୋଇ ଦାକ୍ଷିଣାତ୍ୟରେ ଏକ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ଏମାନେ ଉତ୍ତର-ଭାରତ ଆଡ଼କୁ ରାଜ୍ୟ ବିସ୍ତାର କରି ମଗଧର କାନ୍ୱବଂଶକୁ ତଡ଼ିଦେଇ ମଗଧ ଅଧିକାର କରିଥିଲେ । (୨୭ ଖ୍ରୀ: ପୂ:) ।

ସିଥୀୟ ବା ଶକ:—ଯେତେବେଳେ ଅନ୍ଧ୍ରମାନେ ଉତ୍ତରଭାରତ-ବର୍ଷର ପୂର୍ବ ପାଖ ଜୟ କରୁଥିଲେ, ସେତେବେଳେ ପଶ୍ଚିମ ପାଖ ସିଥୀୟ-ମାନଙ୍କ ଦ୍ୱାରା ଶାସିତ ହେଉଥିଲା । ସିଥୀୟମାନେ ମଧ୍ୟଏସିଆର ଲୋକ । ମଧ୍ୟଏସିଅକୁ ସେତେବେଳେ ହିନ୍ଦୁମାନେ ଶକଦ୍ୱୀପ କହୁଥିଲେ । ସେମାନେ ବକ୍ଟ୍ରିୟାରାଜ୍ୟ ଧ୍ୱଂସ କରି ଭାରତକୁ ଆସିଥିଲେ ଏବଂ ନାନା ସ୍ଥାନରେ ଗୋଟିଏ ଗୋଟିଏ ରାଜ୍ୟ ସ୍ଥାପନ କରି ବାସ କରୁଥିଲେ । ସେମାନେ ଅତ୍ୟନ୍ତ ପରାକ୍ରମୀ ହୋଇ ମହାରାଷ୍ଟ୍ର ଦେଶ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ ।

ଶକରାଜ କନିଷ୍କ ।—ସେ ଶକରାଜାମାନଙ୍କ ମଧ୍ୟରେ ପ୍ରଧାନ ଥିଲେ । ତାହାଙ୍କର ରାଜଧାନୀ ପେଶୱାର ଥିଲା । ସେ ୭୮ ଖ୍ରୀ: ଅବ୍ଦରେ ସିଂହାସନରେ ବସିଥିଲେ । ଏହି ଅବ୍ଦରୁ ଶକାବ୍ଦର ଆରମ୍ଭ ହୋଇଅଛି । ଏହାଙ୍କ ରାଜ୍ୟ ଭାରତରେ ଅଫଗାନସ୍ଥାନଠାରୁ ମଥୁରା ପର୍ଯ୍ୟନ୍ତ ବିସ୍ତୃତ ଥିଲା, ଏବଂ ଏ ବୌଦ୍ଧଧର୍ମାବଲମ୍ବୀ ଥିଲେ ।

ଗୁପ୍ତସାମ୍ରାଜ୍ୟ:—ଆନ୍ଧ୍ରମାନେ ପ୍ରାୟ ୩୦୦ ବର୍ଷ ପର୍ଯ୍ୟନ୍ତ ନିଜ ପ୍ରାଧାନ୍ୟ ଅକ୍ଷୁଣ୍ଣଭାବରେ ରଖିଥିଲେ ଏବଂ ସେମାନେ ଅନେକ ସମୟରେ ସିଥୀୟ-ମାନଙ୍କ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ ଥିଲେ । ଅବଶେଷରେ ସେମାନଙ୍କର

କ୍ଷମତା ହ୍ରାସ ହେବାକୁ ଲାଗିଲା ; ଏବଂ ତୃତୀୟ ଶତାବ୍ଦୀର ଆରମ୍ଭରେ ସେମାନଙ୍କର କ୍ଷମତା ଉତ୍ତର ଓ ଦକ୍ଷିଣ ଭାରତରେ ଲୋପ ପାଇଥିଲା । ଏହି ଶତାବ୍ଦୀର ଶେଷଭାଗରେ ଗୁପ୍ତବଂଶ କ୍ଷମତାଶାଳୀ ହେଲା । ଗୁପ୍ତ ନାମକ ଏକ ବ୍ୟକ୍ତି ଏହି ବଂଶର ସ୍ଥାପୟିତା ଅଟନ୍ତି । ସେ ଏକ ବିଦେଶୀ ରାଜାଙ୍କର କରଦ ରାଜା ଥିଲେ । ଏହି ବଂଶ ଚନ୍ଦ୍ରଗୁପ୍ତଙ୍କ ସମୟରେ ଅତ୍ୟନ୍ତ ପରାକ୍ରମଶାଳୀ ହୋଇଥିଲା, (୩୧୯) । ସମୁଦ୍ରଗୁପ୍ତ ଏହି ବଂଶର ପ୍ରଧାନ ରାଜା । ଉତ୍ତର ଓ ଦକ୍ଷିଣ ଭାରତର ଅନେକ ରାଜା ଏହାଙ୍କ ବଶ୍ୟତା ସ୍ୱୀକାର କରିଥିଲେ । ପାଟଳୀପୁତ୍ର ଗୁପ୍ତସାମ୍ରାଜ୍ୟର ରାଜଧାନୀ ଥିଲା ।

ହୂନ୍‌ମାନଙ୍କ ଆକ୍ରମଣ :—ପଞ୍ଚମ ଶତାବ୍ଦୀର ଶେଷଭାଗରେ ଗୁପ୍ତବଂଶର କ୍ଷମତା ହ୍ରାସ ହେଲା । ଏହି ସମୟରେ ମଧ୍ୟଏସିୟାରୁ ହୂନ୍ ନାମକ ଆଉ ଏକ ଶକଜାତି ଭାରତକୁ ଆସିଥିଲେ । ଏମାନଙ୍କ ଏକ ସର୍ଦ୍ଦାର ତୋରମାନ ପଞ୍ଜାବ ଅଧିକାର କରି ତହିଁରେ ରାଜ୍ୟ ସ୍ଥାପନ କରିଥିଲେ । ତୋରମାନଙ୍କ ପୁତ୍ର ମିହିରକୂଳ ଅତ୍ୟନ୍ତ ପରାକ୍ରମୀ ହୋଇ ଗୁପ୍ତମାନଙ୍କୁ ପରାସ୍ତ କରିଥିଲେ, କିନ୍ତୁ ନିଜେ ଯଶୋଧର୍ମ୍ମଦେବ ବା ବିକ୍ରମାଦିତ୍ୟଙ୍କ ଦ୍ୱାରା ପରାଜିତ ହୋଇ କାଶ୍ମୀରକୁ ପଳାଇଗଲେ ଏବଂ ହୂନ୍‌ମାନଙ୍କର କ୍ଷମତା ଚୂର୍ଣ୍ଣ ହେଲା ।

ଯଶୋଧର୍ମ୍ମଦେବ ବା ବିକ୍ରମାଦିତ୍ୟ :—ଯଶୋଧର୍ମ୍ମଦେବ ମାଳବର ରାଜା ଥିଲେ । ସେ ମିହିରକୂଳଙ୍କୁ ପରାସ୍ତ କରି ଅତ୍ୟନ୍ତ ପରାକ୍ରମୀ ହୋଇଥିଲେ । ତତ୍ପରେ ସେ କ୍ରମଶଃ ରାଜ୍ୟ ବିସ୍ତାର କରି ସମସ୍ତ ଉତ୍ତର ଭାରତରେ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ତାହାଙ୍କ ରାଜଧାନୀ ଉଜ୍ଜୟିନୀ ଥିଲା । ସେ ଖ୍ରୀ : ପୂ : ୫୭ ଅବ୍ଦରେ ବିକ୍ରମସମ୍ବତ୍ ନାମକ ଏକ ଅବ୍ଦ ପ୍ରଚଳନ କରିଥିଲେ । ସେ ଶକମାନଙ୍କୁ ପରାସ୍ତ କରିବାରୁ ଶକାରି ଉପାଧି

ସ୍ମାପ୍ତ ହୋଇଥିଲେ । ତାହାଙ୍କ ଅନ୍ତେ ତାହାଙ୍କ ବଂଶଧରମାନେ ଅତ୍ୟନ୍ତ ଦୁର୍ବଳ ହେବାରୁ ତାଙ୍କ ଅଧୀନସ୍ଥ ଅନେକଗୁଡ଼ିଏ ରାଜ୍ୟ ସ୍ୱାଧୀନ ହୋଇଥିଲା ।

ଉତ୍ତର ଭାରତର ଶେଷ ହିନ୍ଦୁ ସମ୍ରାଟ୍ ହର୍ଷବର୍ଦ୍ଧନ :—ଉପରୋକ୍ତ ସ୍ୱାଧୀନ ରାଜ୍ୟମାନଙ୍କ ମଧ୍ୟରେ ଥାନେଶ୍ୱର ଏକ ରାଜ୍ୟ ଥିଲା । ହର୍ଷ-ବର୍ଦ୍ଧନଙ୍କ ସମୟରେ ଏହା ଅତ୍ୟନ୍ତ ପରାକ୍ରମଶାଳୀ ହୋଇଥିଲା । ହର୍ଷ-ବର୍ଦ୍ଧନ ଥାନେଶ୍ୱରଠାରୁ କନୌଜକୁ ନିଜ ରାଜଧାନୀ ଉଠାଇ ନେଇଥିଲେ । ସେ ବୌଦ୍ଧଧର୍ମାବଲମ୍ବୀ ଥିଲେ । ତାହାଙ୍କ ସମୟରେ ଚୀନ ପରିବ୍ରାଜକ ହୁୟେନ୍‌ସାଂ ଭାରତକୁ ଆସିଥିଲେ । ହର୍ଷବର୍ଦ୍ଧନଙ୍କ ସାମ୍ରାଜ୍ୟ କାଶ୍ମୀରଠାରୁ ଆସାମ ପର୍ଯ୍ୟନ୍ତ, ଆଉ ନେପାଳଠାରୁ ନର୍ମ୍ମଦା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେ ଦାକ୍ଷିଣାତ୍ୟରେ ନିଜ ପ୍ରାଧାନ୍ୟ ସ୍ଥାପନ କରିବାଲାଗି ଚେଷ୍ଟା କରି-ଥିଲେ । କିନ୍ତୁ ଚାଲୁକ୍ୟମାନେ ତହିଁରେ ବାଧା ଦେଇଥିଲେ ।

ଦାକ୍ଷିଣାତ୍ୟରେ ଚାଲୁକ୍ୟ ସାମ୍ରାଜ୍ୟ :—ଚାଲୁକ୍ୟମାନେ କ୍ଷତ୍ରିୟ ଜାତି ଅଟନ୍ତି । ଲୋକେ କହନ୍ତି ସେମାନେ ଅଯୋଧ୍ୟାରୁ ଦାକ୍ଷିଣାତ୍ୟକୁ ଯାଇ-ଥିଲେ । ଷଷ୍ଠ ଶତାବ୍ଦୀର ଆରମ୍ଭରେ ଅର୍ଥାତ୍ ଆନ୍ଧ୍ରବଂଶଧ୍ୱଂସର ୩୦୦ ବର୍ଷପରେ ସେମାନେ ଦାକ୍ଷିଣାତ୍ୟରେ ମହାରାଷ୍ଟ୍ରଦେଶୀୟ ରାଜାମାନଙ୍କୁ ଦମନ କରି ଏକ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ଏହି ଶେଷୋକ୍ତ ରାଜା-ମାନେ ରାଷ୍ଟ୍ରକୂଟ ବା ରାଠୋର ବଂଶର ଲୋକ । ଏମାନେ ଆନ୍ଧ୍ରବଂଶର ପତନପରେ ସ୍ୱାଧୀନ ହୋଇଥିଲେ । ଜୟସିଂହ ଚାଲୁକ୍ୟବଂଶର ପ୍ରଥମ ରାଜା ଥିଲେ । ଜୟସିଂହଙ୍କ ନାତି ୧ମ ପୁଲକେଶୀ ଅଶ୍ୱମେଧଯଜ୍ଞ କରିଥିଲେ । ତାହାଙ୍କର ନାତି ଦ୍ୱିତୀୟ ପୁଲକେଶୀ ହର୍ଷବର୍ଦ୍ଧନଙ୍କର ଆକ୍ରମଣରେ ବାଧା ଦେଇଥିଲେ ଏବଂ ସେ ଏହି ବଂଶର ସର୍ବପ୍ରଧାନ ନରପତି ଥିଲେ ।

# ୪ର୍ଥ ଅଧ୍ୟାୟ ।

## ବୌଦ୍ଧ ଯୁଗ ।

### (ଖ) ସାମାଜିକ ଅବସ୍ଥା ।

ଆଦିମବାସୀଙ୍କ ସଙ୍ଗେ ଯୁଦ୍ଧକାର୍ଯ୍ୟ ଶେଷ ହେବାରୁ ଏବଂ ଅର୍ଯ୍ୟମାନଙ୍କ ମଧ୍ୟରେ ପ୍ରାଧାନ୍ୟଲାଭର ଇଚ୍ଛା କ୍ରମଶଃ ହ୍ରାସ ଲଭିବାରୁ ଏହି ସମୟରେ ପ୍ରଜାମାନେ ପ୍ରବଳ ସାମ୍ରାଜ୍ୟମାନଙ୍କ ଅଧୀନ ରହି ଶାନ୍ତି ଭୋଗ କରୁଥିଲେ । ଏହି ସମୟର ପ୍ରଥମ ଭାଗରେ ଦର୍ଶନଶାସ୍ତ୍ରର ବିଶେଷ ଉନ୍ନତି ହୋଇଥିଲା, ଏବଂ ବୌଦ୍ଧ ଓ ଜୈନ ଧର୍ମ୍ମର ଆବିର୍ଭାବ ହୋଇଥିଲା ।

ଦର୍ଶନଶାସ୍ତ୍ର:—ବୈଦିକ କାଳରୁ ଭାରତରେ ଦର୍ଶନଶାସ୍ତ୍ରର ଆଲୋଚନା ଆରମ୍ଭ ହୋଇଥିଲା । ଉପନିଷଦକୁ ଜଗତର ଆଦି ଦର୍ଶନଶାସ୍ତ୍ର ବୋଲାଯାଇପାରେ, ମାତ୍ର ତହିଁରେ ଦର୍ଶନଶାସ୍ତ୍ରର ବିଷୟମାନ ଆଖ୍ୟାୟିକାରୂପରେ କଥିତ ଅଛି । ଏଥିଉତ୍ତାରୁ ମହାକାବ୍ୟଦ୍ୱୟ ରଚିତ ହେବା ସମୟରେହିଁ ପ୍ରକୃତ ଦର୍ଶନଶାସ୍ତ୍ରର ସୃଷ୍ଟି ହୋଇଥିଲା । ବୌଦ୍ଧଧର୍ମ୍ମର ଉନ୍ନତି ସଙ୍ଗେ ସଙ୍ଗେ ହିନ୍ଦୁଦର୍ଶନ ପ୍ରକୃତ ଉନ୍ନତି ଲାଭ କରିଥିଲା । ଦର୍ଶନଶାସ୍ତ୍ର ଛଅ ଭାଗରେ ବିଭକ୍ତ । ଯଥା:—୧. କପିଳଙ୍କ ସାଂଖ୍ୟ; ୨. ପାତଞ୍ଜଳଙ୍କ ଯୋଗ; ୩. ଗୌତମଙ୍କ ନ୍ୟାୟ; ୪. କଣାଦଙ୍କ ବୈଶେଷିକ; ୫. ଜୈମିନିଙ୍କ ପୂର୍ବ ମୀମାଂସା; ୬. ବ୍ୟାସଦେବଙ୍କ ଉତ୍ତର ମୀମାଂସା ବା ବେଦାନ୍ତ ।

ଦାର୍ଶନିକମାନେ ବେଦ ଓ ଉପନିଷଦକୁ ମାନନ୍ତି । କିପରି ଲୋକେ ମୁକ୍ତି ଲଭିବେ ଅର୍ଥାତ୍ ସାଂସାରିକ କ୍ଲେଶରୁ ପରିତ୍ରାଣ ପାଇବେ

ଏହା ସବୁ ଦର୍ଶନର ପ୍ରଧାନ ଲକ୍ଷ୍ୟ ସ୍ଥଳ । ସର୍ବପ୍ରକାର କ୍ଳେଶ ମନୁଷ୍ୟ-ମାନଙ୍କର ଇହଜନ୍ମ ଓ ପୂର୍ବଜନ୍ମର କର୍ମଫଳ । ମନୁଷ୍ୟର ବର୍ତ୍ତମାନ ଜୀବନର କ୍ଳେଶ ମନୁଷ୍ୟକୁ ସମସ୍ତ ପାପରୁ ପରିତ୍ରାଣ କରିପାରେ ନାହିଁ ବୋଲି ମନୁଷ୍ୟମାନେ ପୁନଃ ପୁନଃ ଜନ୍ମଗ୍ରହଣ କରନ୍ତି । ତତ୍ତ୍ୱଜ୍ଞାନ ଲାଭ କଲେ ମନୁଷ୍ୟମାନେ ପୁଣି ଜନ୍ମଗ୍ରହଣ କରନ୍ତି ନାହିଁ । ଏଗୁଡ଼ିକ ଦର୍ଶନ-ଶାସ୍ତ୍ରମାନଙ୍କର ମତ । ସମସ୍ତ ଦର୍ଶନଶାସ୍ତ୍ର ବ୍ରାହ୍ମଣମାନଙ୍କ ଦ୍ୱାରା ଲିଖିତ ।

ବୌଦ୍ଧଧର୍ମ୍ମ ଓ ଜୈନଧର୍ମ୍ମ :—ଏହି ସମୟରେ ଅନେକ ସନ୍ନ୍ୟାସୀ ଧର୍ମ୍ମପ୍ରଚାରକ ଆବିର୍ଭୂତ ହୋଇଥିଲେ । ସେମାନଙ୍କର ଉପଦେଶାବଳୀ ସ୍ଥାନୀୟ ପ୍ରଚଳିତ ଭାଷାରେ ପ୍ରଚାରିତ ହେଉଥିବାରୁ ସର୍ବସାଧାରଣ ସେଗୁଡ଼ିକ ବୁଝିପାରୁ ନ ଥିଲେ । ସେମାନଙ୍କ ମତ ଅନେକ ସ୍ଥଳରେ ବ୍ରାହ୍ମଣ-ଧର୍ମ୍ମର ମତଠାରୁ ଭିନ୍ନ ଥିଲା । ଏହି ସନ୍ନ୍ୟାସୀପ୍ରଚାରକମାନଙ୍କ ମଧ୍ୟରେ ଗୌତମ ବୁଦ୍ଧ ଓ ମହାବୀର ପ୍ରଧାନ ଥିଲେ ।

ବୁଦ୍ଧଦେବ ଓ ବୌଦ୍ଧଧର୍ମ୍ମ—ଗୌତମ ବୁଦ୍ଧ ଜଣେ ରାଜପୁତ୍ର ଥିଲେ । ସେ ସଂସାର ତ୍ୟାଗ କରି ବହୁକାଳ ତପସ୍ୟା କରିବାପରେ ବୌଦ୍ଧଧର୍ମ୍ମ ନାମକ ଏକ ନୂତନ ଧର୍ମ୍ମ ପ୍ରଚାର କରିଥିଲେ । ସେହି ଧର୍ମ୍ମରେ ଜାତିଭେଦ କିମ୍ବା ଦେବ ଦେବୀ ମାନିବାର ବିଧି ନ ଥିଲା । କାମ, କ୍ରୋଧ ପ୍ରଭୃତି ରିପୁମାନେ ମନୁଷ୍ୟର ଦୁଃଖର କାରଣ ଅଟନ୍ତି । ସେମାନଙ୍କୁ ନିର୍ମୂଳ କଲେ ଶେଷରେ ନିର୍ବାଣପ୍ରାପ୍ତି ହୁଏ । ବୌଦ୍ଧମାନେ ଜନ୍ମାନ୍ତର ବିଶ୍ୱାସ କରନ୍ତି ଏବଂ କର୍ମ୍ମଫଳ ମାନନ୍ତି । ସର୍ବ ଜୀବରେ ଦୟା ଏହି ଧର୍ମ୍ମର ସାର ମାତ୍ର ଅଟେ ।

ବୌଦ୍ଧମାନଙ୍କର ଧର୍ମ୍ମପ୍ରଚାରପ୍ରଥା ଥିବାରୁ ଆଉ ସେମାନେ ସମସ୍ତ ଲୋକଙ୍କୁ ଶିକ୍ଷା ଦେଉଥିବାରୁ ଅଳ୍ପଦିନମଧ୍ୟରେ ବୌଦ୍ଧଧର୍ମ୍ମ ବିଶେଷ

ଉନ୍ନତି ଲାଭ କରିଥିଲା । ଅଶୋକଙ୍କ ସମୟରେ ସମସ୍ତ ଭାରତବର୍ଷରେ ଏହା ବିସ୍ତାରିତ ହୋଇଥିଲା । ଯେଉଁ କାଳର କଥା ଏହି ଅଧ୍ୟାୟରେ ବର୍ଣ୍ଣିତ ହେଉଅଛି ସେହି କାଳ ଶେଷ ନ ହେବା ପର୍ଯ୍ୟନ୍ତ ଏହି ଧର୍ମ୍ମ ଭାରତରେ ଅକ୍ଷୁଣ୍ଣଭାବରେ ରହିଥିଲା । ତହିଁପରେ ତାହା ଏ ଦେଶରୁ କ୍ରମେ ବିଲୁପ୍ତ ହେବାକୁ ବସିଲା । ବର୍ତ୍ତମାନ ପୃଥିବୀର ପ୍ରାୟ ଅର୍ଦ୍ଧାଂଶ ଲୋକ ଏହି ଧର୍ମ୍ମାବଲମ୍ବୀ ।

ମହାବୀର ଓ ଜୈନଧର୍ମ୍ମ—ମହାବୀର ମଧ୍ୟ ରାଜପୁତ୍ର ଥିଲେ । ସେ ଜୈନଧର୍ମ୍ମ ନାମକ ଏକ ଧର୍ମ୍ମ ପ୍ରଚାର କରିଥିଲେ । ଏହି ଧର୍ମ୍ମାବଲମ୍ବୀମାନେ ବେଦ ମାନୁଥିଲେ । ଜୀବ ପ୍ରତି ଦୟା ଏମାନଙ୍କର ପ୍ରଧାନ ଧର୍ମ୍ମନୀତି ଥିଲା । ମାତ୍ର ଜୈନଧର୍ମ୍ମ ବିଶେଷ ଉନ୍ନତିଲାଭ କରି ପାରି ନ ଥିଲା ; ଭାରତଛଡ଼ା ଏହା ଅନ୍ୟତ୍ର ପ୍ରଚାରିତ ହୋଇ ନ ଥିଲା, ସୁତରାଂ ଭାରତ-ବ୍ୟତୀତ ଏହି ଧର୍ମ୍ମାବଲମ୍ବୀ ଅନ୍ୟତ୍ର ଦୃଷ୍ଟିଗୋଚର ହୁଅନ୍ତି ନାହିଁ ।

ଜ୍ୟୋତିଷଶାସ୍ତ୍ର ଓ ବୀଜଗଣିତର ଉନ୍ନତି :—ଏହି ସମୟରେ ଜ୍ୟୋତିଷଶାସ୍ତ୍ର ବିଶେଷ ଉନ୍ନତି ଲଭିଥିଲା । ବିଖ୍ୟାତ ଜ୍ୟୋତିର୍ବିଦ୍ ପଣ୍ଡିତବର୍ଗଙ୍କ ପରେ କେତେକ ଲୋକେ ସିଦ୍ଧାନ୍ତ ଶାସ୍ତ୍ର ଲେଖିଥିଲେ । ଏହି ଶାସ୍ତ୍ରମାନଙ୍କ ମଧ୍ୟରେ ସୂର୍ଯ୍ୟସିଦ୍ଧାନ୍ତ ପ୍ରଧାନ । ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ପଣ୍ଡିତ ଆର୍ଯ୍ୟଭଟ୍ଟ "ପୃଥିବୀ ଗୋଲାକାର ଏବଂ ତାହା ନିଜ ମେରୁଦଣ୍ଡର ଚାରିପାଖରେ ଘୂରୁଅଛି" ଏହା ଆବିଷ୍କାର କରିଥିଲେ । ସେ ୪୭୬ ଖ୍ରୀ: ଅ: ରେ କୁସୁମପୁରରେ ଜନ୍ମଗ୍ରହଣ କରିଥିଲେ । ବିକ୍ରମାଦିତ୍ୟଙ୍କ ସଭାରେ ମଧ୍ୟ ବରାହମିହିର ନାମକ ଏକ ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ପଣ୍ଡିତ ଥିଲେ । ବୀଜଗଣିତରେ ହିନ୍ଦୁମାନେ ଅତ୍ୟନ୍ତ ଉନ୍ନତିଲାଭ କରିଥିଲେ ଏବଂ ଏହି ସମୟରେ ସେ ବିଷୟରେ ଅନେକ ଗ୍ରନ୍ଥ ଲେଖାଯାଇଥିଲା ।

ଚିକିତ୍ସାଶାସ୍ତ୍ର :—ଏହି ସମୟରେ ଚିକିତ୍ସାଶାସ୍ତ୍ରର ମଧ୍ୟ ବିଶେଷ ଉନ୍ନତି

ହୋଇଥିଲା । ଅଶୋକ ଓ ଅନ୍ୟାନ୍ୟ ବୌଦ୍ଧରାଜାମାନେ ମନୁଷ୍ୟ ଓ ପଶୁ ଲାଗି ଚିକିତ୍ସାଳୟମାନ ସ୍ଥାପନ କରି ଉକ୍ତ ବିଦ୍ୟାର ବିଶେଷ ଉନ୍ନତି କରିଥିଲେ । ଚରକ ଓ ସୁଶ୍ରୁତ ନାମକ ଚିକିତ୍ସାବିଦ୍ୟାର ଦୁଇଗୋଟି ପ୍ରଧାନ ଗ୍ରନ୍ଥ ଏହି ସମୟରେ ରଚିତ ହୋଇଥିଲା ।

ସଂସ୍କୃତ ସାହିତ୍ୟର ଉନ୍ନତି :—ଏହି କାଳର ପ୍ରଥମାଂଶରେ ଯେପରି ଧର୍ମ୍ମ ଓ ଦର୍ଶନର ଉନ୍ନତି ହୋଇଥିଲା, ଶେଷାଂଶରେ ମଧ୍ୟ ସେହିପରି ସାହିତ୍ୟର ଉନ୍ନତି ହୋଇଥିଲା । ଏହି ସମୟର କବିମାନଙ୍କ ମଧ୍ୟରେ କାଳିଦାସ ସର୍ବଶ୍ରେଷ୍ଠ । ଏହାଙ୍କ କୃତ ରଘୁବଂଶ, କୁମାରସମ୍ଭବ ଏବଂ ଶକୁନ୍ତଳା ଭାରତବିଖ୍ୟାତ । ବାନଭଟ୍ଟ ହର୍ଷବର୍ଦ୍ଧନଙ୍କ ସମୟର ଲୋକ ଥିଲେ । ସେ ଶ୍ରୀହର୍ଷଚରିତ ନାମକ ହର୍ଷବର୍ଦ୍ଧନଙ୍କ ଜୀବନଚରିତ ଏବଂ କାଦମ୍ବରୀ ନାମକ ଖଣ୍ଡିଏ ବିଖ୍ୟାତ ଉପନ୍ୟାସ ଲେଖିଥିଲେ । ବିକ୍ରମାଦିତ୍ୟଙ୍କ ସଭାର ପଣ୍ଡିତ ଅମରସିଂହ ଅମରକୋଷ ନାମକ ଏକ ସଂସ୍କୃତ ଅଭିଧାନ ଲେଖି ଅକ୍ଷୟ କୀର୍ତ୍ତି ରଖିଯାଇଅଛନ୍ତି ।

କଥିତ ଭାଷାର ଉନ୍ନତି :—ଏହି ସମୟର ଧର୍ମ୍ମସଂସ୍କାରକମାନଙ୍କ ଦ୍ୱାରା କଥିତ ଭାଷାର ମଧ୍ୟ ଉନ୍ନତି ସାଧିତ ହୋଇଥିଲା । ବ୍ରାହ୍ମଣମାନେ ସେମାନଙ୍କର ଧର୍ମ୍ମସମ୍ବନ୍ଧୀୟ ଗ୍ରନ୍ଥମାନ ସଂସ୍କୃତରେ ଲେଖୁଥିଲେ । କିନ୍ତୁ ବୌଦ୍ଧ ଓ ଜୈନ ପ୍ରଚାରକମାନେ ପ୍ରାଦେଶିକ କଥିତ ଭାଷାରେ ଧର୍ମ୍ମସମ୍ବନ୍ଧୀୟ ଗଳ୍ପମାନ ଲେଖି ଲୋକମାନଙ୍କୁ ଶିକ୍ଷା ଦେଉଥିଲେ । ଜୈନମାନେ ମହାରାଷ୍ଟ୍ରୀୟ ଭାଷାର ଓ ବୌଦ୍ଧମାନେ ମଗଧରେ ପ୍ରଚଳିତ ପାଲିଭାଷାର ଉନ୍ନତି ସାଧନ କରିଥିଲେ । ପ୍ରାୟ ସମସ୍ତ ବୌଦ୍ଧଗ୍ରନ୍ଥ ପାଲିଭାଷାରେ ଲିଖିତ ।

ଶିଳ୍ପ ଓ ଭାସ୍କର କାର୍ଯ୍ୟ :—ପ୍ରାଚୀନ ମନ୍ଦିର ଓ ବୌଦ୍ଧମାନଙ୍କର ଭଗ୍ନ ସ୍ତୂପମାନଙ୍କରୁ ପୂର୍ବକାଳର ଶିଳ୍ପ ଓ ଭାସ୍କର କାର୍ଯ୍ୟର ପରିଚୟ

ମିଳେ । ଇଲୋରା, ଏଲିଫାଣ୍ଟା ଓ ଖଣ୍ଡଗିରି ପ୍ରଭୃତିର ଗୁହାମାନ ଆଉ ସେଥିରେ ଥିବା ଖୋଦିତ କାର୍ଯ୍ୟ ସେ କାଳର ଶିଳ୍ପର ପରିଚୟ ଦେଉଅଛି ।

ବାଣିଜ୍ୟ ଓ ବିଦେଶରେ ଉପନିବେଶ-ସଂସ୍ଥାପନ:—ମନୁସଂହିତା ରଚିତ ହେବାପୂର୍ବରୁ ହିନ୍ଦୁମାନେ ଜାହାଜ ଚଢ଼ି ବାଣିଜ୍ୟ କରିବାକୁ ବିଦେଶ ଯାଉଥିଲେ । ଆରବ ସାଗରରେ ସେମାନେ ବେଶି ବାଣିଜ୍ୟ କରୁ ନ ଥିଲେ । କିନ୍ତୁ ବଙ୍ଗୋପସାଗରରେ ସେମାନେ ଜାହାଜରେ ଚଢ଼ି ମାଳୟ, ଜାଭା, ସୁମାତ୍ରା ଓ ଚୀନ ପର୍ଯ୍ୟନ୍ତ ଗମନାଗମନ କରୁଥିଲେ । ଖ୍ରୀ: ପୂ: ପାଞ୍ଚଶତ ବର୍ଷ ପୂର୍ବେ ବଙ୍ଗଳାର ହିନ୍ଦୁମାନେ ସିଂହଳ ଦ୍ୱୀପ ଜୟ କରି ସେଠାରେ ବସତି କରିଥିଲେ । ଜାଭା ଓ ତାହାର ନିକଟବର୍ତ୍ତୀ ଦ୍ୱୀପମାନଙ୍କରେ ମଧ୍ୟ ଏଦେଶୀୟମାନେ ବସତିସ୍ଥାପନ କରିଥିଲେ । ଚୀନଦେଶର ପରିବ୍ରାଜକ ଫାହିଆନ୍ ପଞ୍ଚମ ଶତାବ୍ଦୀରେ ଭାରତବର୍ଷ ଭ୍ରମଣ କରିବା ସମୟରେ ବଙ୍ଗଳାରୁ ସିଂହଳ ଏବଂ ସିଂହଳରୁ ଜାଭା ଦ୍ୱୀପକୁ ହିନ୍ଦୁମାନଙ୍କ ଦ୍ୱାରା ଚାଳିତ ଜାହାଜରେ ଯାଇଥିବାର ଲେଖିଅଛନ୍ତି ।

ସାଧାରଣ ଶିକ୍ଷାର ବିସ୍ତାର—ବୌଦ୍ଧ ସନ୍ନ୍ୟାସୀମାନଙ୍କ ଦ୍ୱାରା ସାଧାରଣ ଶିକ୍ଷାର ବିଶେଷ ଉନ୍ନତି ହୋଇଥିଲା । ଏମାନଙ୍କର ମଠମାନ ଶିକ୍ଷାର ଏକ ଏକ କେନ୍ଦ୍ରସ୍ଥଳୀ ଥିଲା । କୌଣସି କୌଣସି ବୌଦ୍ଧ ମଠରେ ବହୁସହସ୍ର ଛାତ୍ର ଶିକ୍ଷାପ୍ରାପ୍ତ ହେଉଥିବାର ଜଣାଯାଏ । ଏହି ଶିଷ୍ୟମାନଙ୍କ ମଧ୍ୟରୁ ଅନେକେ ଚୀନ, ଶ୍ୟାମ ଏବଂ ଅନ୍ୟାନ୍ୟ ଦୂର ଦେଶରୁ ଆସୁଥିଲେ । ନାଳନ୍ଦର ମଠ ଏହି ସମୟରେ ସର୍ବପ୍ରଧାନ ବିଦ୍ୟାଳୟ ଥିଲା । ଏହି ବିଦ୍ୟାଳୟର ବିଭିନ୍ନ ବିଭାଗରେ ଶିକ୍ଷା ଦେବା ଲାଗି ପ୍ରାୟ ଶଏଗୋଟି ପ୍ରକୋଷ୍ଠ ଥିଲା । ଆଉ ସେଥିରେ ପ୍ରାୟ ଦଶହଜାର ସନ୍ନ୍ୟାସୀ ଶିକ୍ଷକ ଓ ଛାତ୍ର ବାସ କରୁଥିଲେ । ଛାତ୍ରମାନେ ଗ୍ରାସାଚ୍ଛାଦନ ପାଉଥିଲେ ଏବଂ ବିନା-

ବେତନରେ ପାଠ ପଢ଼ୁଥିଲେ । ଏହାଛଡ଼ା ଅନେକ ଟୋଲ ମଧ୍ୟ ଥିଲା । ତହିଁରେ ବ୍ରାହ୍ମଣମାନେ ବିନାବେତନରେ ଛାତ୍ରମାନଙ୍କୁ ଶିକ୍ଷାଦାନ କରୁଥିଲେ ।

ମେଗାସ୍ଥିନିସ୍-ବର୍ଣ୍ଣିତ ଭାରତର ବିବରଣ :—ପୂର୍ବେ କୁହାଯାଇଅଛି ଯେ, ମେଗାସ୍ଥିନିସ୍ ନାମକ ଏକ ଗ୍ରୀକ-ପଣ୍ଡିତ ଚନ୍ଦ୍ରଗୁପ୍ତଙ୍କ ରାଜ-ସଭାରେ ଦୂତ ହୋଇ ବାସ କରୁଥିଲେ । ଏ ମହାତ୍ମା ସେ ସମୟର ଭାରତର କଥା ଯାହା ଲେଖିଯାଇଅଛନ୍ତି ତାହା ତଳେ ଦିଆଗଲା । ସେ ପାଞ୍ଚବର୍ଷ ଭାରତରେ ରହି ହିନ୍ଦୁସମାଜକୁ ଭଲରୂପେ ଜାଣିଥିଲେ ।

ମେଗାସ୍ଥିନିସ ହିନ୍ଦୁମାନଙ୍କୁ ସାତ ଜାତିରେ ବିଭକ୍ତ କରିଅଛନ୍ତି । ଯଥା—ବିଦ୍ୟା ଓ ଧର୍ମର ବ୍ୟବସାୟୀ, ରାଜସଭାସଦ୍ ବା ପରାମର୍ଶଦାତା, ଯୋଦ୍ଧା, ରାଜକର୍ମଚାରୀ, କୃଷକ, ବିବିଧ ଶିଳ୍ପ-ବ୍ୟବସାୟୀ, ମେଷରକ୍ଷକ । ମେଗାସ୍ଥିନିସ୍ ବୋଧ ହୁଏ ବ୍ରାହ୍ମଣ, କ୍ଷତ୍ରିୟ ପ୍ରଭୃତି ଚାରି ଜାତିଙ୍କ ବ୍ୟବ-ସାୟଭେଦରେ ସାତ ଜାତି ବୋଲି ବର୍ଣ୍ଣନା କରିଅଛନ୍ତି । ବିଦ୍ୟା ଓ ଧର୍ମର ବ୍ୟବସାୟୀମାନେ ବ୍ରାହ୍ମଣ ଓ ବୌଦ୍ଧସନ୍ନ୍ୟାସୀ ଅଟନ୍ତି । ପରାମର୍ଶ-ଦାତାମାନେ ବ୍ରାହ୍ମଣ ଓ କ୍ଷତ୍ରିୟ, ଯୋଦ୍ଧା ଓ ରାଜକର୍ମଚାରୀମାନେ କ୍ଷତ୍ରିୟ, କୃଷକ ଓ ଶିଳ୍ପ-ବ୍ୟବସାୟୀମାନେ ବୈଶ୍ୟ ଓ ସଙ୍କରଜାତୀୟ ଲୋକ-ମାନେ ଥିବାର ବୋଧ ହୁଏ । ମେଷରକ୍ଷକମାନେ ଶୂଦ୍ର ଓ ପାହାଡ଼ିୟା ଜାତି ଅଟନ୍ତି । ହିନ୍ଦୁମାନଙ୍କର ସ୍ୱଭାବ ସରଳ ଥିଲା । ସେମାନେ ସତ୍ୟ-ବାଦୀ, ମିତବ୍ୟୟୀ, ଶାନ୍ତପ୍ରକୃତି ଓ ଯୁଦ୍ଧନିପୁଣ ଥିଲେ । କ୍ରୀତଦାସ-ପ୍ରଥା ସେ ସମୟରେ ସେମାନଙ୍କ ମଧ୍ୟରେ ପ୍ରଚଳିତ ନ ଥିଲା । କଳନ୍ତର ଗ୍ରହଣ କରି ଋଣଦେବାପ୍ରଥା ମଧ୍ୟ ନ ଥିଲା । ସେମାନେ ଏପରି ନ୍ୟାୟପରାୟଣ ଥିଲେ ଯେ, କେହି ଚୋରି କରୁ ନ ଥିଲେ କିମ୍ବା ଅଭିଯୋଗ କରିବା ଲାଗି କାହାରିକି ରାଜଦ୍ୱାରକୁ ଯିବାକୁ ପଡ଼ୁ ନ ଥିଲା ।

ସେମାନଙ୍କ ପରିଚ୍ଛଦରେ ଆଡ଼ମ୍ବର ନ ଥିଲା । ଖଣ୍ଡିଏ ଯୋତ, ଖଣ୍ଡିଏ ଚାଦର, ଖଣ୍ଡିଏ ଛତା, ଯୋଡ଼ାଏ ସାମାନ୍ୟ ଯୋତା ମନୁଷ୍ୟର ସାଧାରଣ ପରିଚ୍ଛଦ ଥିଲା । କୃଷି ଉନ୍ନତ ଅବସ୍ଥାରେ ଥିଲା । ଦୁର୍ଭିକ୍ଷ କଣ ତାହା ସେମାନେ ଜାଣୁ ନ ଥିଲେ । ରମଣୀମାନେ ପତିବ୍ରତା ଥିଲେ । ସତୀଦାହ ଅଳ୍ପପରିମାଣରେ ପ୍ରଚଳିତ ଥିଲା । ଚାଉଳର ମଦ୍ୟ ଛଡ଼ା ଆଉ କୌଣସି ପ୍ରକାର ମଦ୍ୟ ବ୍ୟବହୃତ ହେଉ ନ ଥିଲା; ତାହା ମଧ୍ୟ ଅତି ଅଳ୍ପପରିମାଣରେ ବ୍ୟବହୃତ ହେଉଥିଲା ।

ଫାହିଆନ-ବର୍ଣ୍ଣିତ ଭାରତ-ବିବରଣ—ପୂର୍ବେ କୁହାଯାଇଅଛି ଯେ, ଫାହିଆନ୍ ପଞ୍ଚମ ଶତାବ୍ଦୀର ପ୍ରଥମ ଭାଗରେ ଚୀନରୁ ଭାରତକୁ ଆସିଥିଲେ । ସେ ଉତ୍ତର ଭାରତର ଅନେକ ପ୍ରଦେଶ ବୁଲିଥିଲେ । ତାହାଙ୍କ ଲିଖିତ ବିବରଣରୁ ଜଣାଯାଏ ଯେ, ସେକାଳରେ ଭାରତର ଲୋକେ ବଡ଼ ସୁଖୀ ଥିଲେ ଏବଂ ସନ୍ତୋଷରେ ଦିନ କଟାଉଥିଲେ । ସେମାନେ ରାଜାଙ୍କୁ ବିଶେଷ ଖଜଣା ଦେଉ ନ ଥିଲେ । ସେମାନେ ଅତ୍ୟନ୍ତ ମିତାଚାରୀ ଥିଲେ ଏବଂ ଜୀବହତ୍ୟାକୁ ଅତ୍ୟନ୍ତ ଘୃଣା କରୁଥିଲେ । ଫୌଜଦାରୀ ଆଇନସମୂହ କଠୋର ନ ଥିଲା ଏବଂ କାୟିକ ଦଣ୍ଡ ଦିଆଯାଉ ନ ଥିଲା । ସେ କାଳର ହିନ୍ଦୁମାନେହିଁ ପ୍ରକୃତ ସ୍ୱାଧୀନତାର ସୁଖ ଭୋଗ କରୁଥିଲେ ।

ହୁଏନ୍‌ସାଂ-ବର୍ଣ୍ଣିତ ଭାରତ-ବିବରଣ—ପ୍ରସିଦ୍ଧ ଚୀନ-ପରିବ୍ରାଜକ ହୁଏନସାଂ ୬୩୦ ଖ୍ରୀ: ଅ: ରେ ଭାରତକୁ ଆସି ଏଠାରେ ୧୫ ବର୍ଷ ରହି ଉତ୍ତର ଓ ଦକ୍ଷିଣ ଭାରତବର୍ଷର ଅନେକ ସ୍ଥାନ ବୁଲି ଯାହା ଲେଖିଯାଇଅଛନ୍ତି ତାହା ନିମ୍ନରେ ଦିଆଗଲା ।

ସେ ନାଲନ୍ଦ ବିଦ୍ୟାଳୟର ବିଷୟ ବିଶେଷରୂପେ ଲେଖିଯାଇଅଛନ୍ତି ।

ସେ ଦକ୍ଷିଣ ଭାରତରେ ଚାଲୁକ୍ୟମାନଙ୍କର ସାହସ ଦେଖି ବିଶେଷ ପ୍ରଶଂସା କରିଅଛନ୍ତି । ସେତେବେଳେ ମଗଧ ଓ ମାଳବ ଦେଶରେ ବିଦ୍ୟାର ଅତ୍ୟନ୍ତ ସମାଦର ଥିଲା । ଗୁର୍ଜ୍ଜରାଟ ଧନ ଓ ବାଣିଜ୍ୟରେ ବିଖ୍ୟାତ ଥିଲା । ଦେଶର ଶାସନପ୍ରଥା କଠୋର ନ ଥିଲା । ରାଜକର ଅତ୍ୟନ୍ତ ସାମାନ୍ୟ ଥିଲା । ରାଜାଙ୍କର ପ୍ରଧାନ କର୍ମ୍ମଚାରୀମାନେ ଜାୟଗିର ପ୍ରାପ୍ତ ହେଉଥିଲେ । ରାଜା ନିଜ ଭୂମି ଚାରି ଭାଗରେ ବିଭକ୍ତ କରି ଏକ ଭାଗରୁ ରାଜ୍ୟର ବ୍ୟୟ ନିର୍ବାହ କରୁଥିଲେ, ଦ୍ୱିତୀୟ ଭାଗକୁ ରାଜକର୍ମ୍ମଚାରୀମାନଙ୍କୁ ଜାୟଗିର-ସ୍ୱରୂପ ଦେଉଥିଲେ, ତୃତୀୟ ଭାଗ ଶାସ୍ତ୍ରଜ୍ଞ ବ୍ୟକ୍ତିମାନଙ୍କୁ ଦେଇ ଚତୁର୍ଥ ଭାଗକୁ ଧର୍ମ୍ମକାର୍ଯ୍ୟରେ ବ୍ୟୟ କରୁଥିଲେ । ମେଗାସ୍ଥିନିସ୍‌ଙ୍କ ପରି ହୁଏନ୍‌ସାଂ ମଧ୍ୟ ହିନ୍ଦୁମାନଙ୍କର ସରଳତା ଓ ସତ୍ୟବାଦିତାର ଅତ୍ୟନ୍ତ ପ୍ରଶଂସା କରିଅଛନ୍ତି ।

---

## ୫ମ ଅଧ୍ୟାୟ ।

### ବ୍ରାହ୍ମଣ୍ୟଧର୍ମ୍ମର ପୁନରୁତ୍ଥାନ-ଯୁଗ ।

### (କ) ରାଜନୈତିକ ଅବସ୍ଥା ।

ହର୍ଷବର୍ଦ୍ଧନଙ୍କ ମୃତ୍ୟୁପରେ ତାହାଙ୍କ ସାମ୍ରାଜ୍ୟ ବିଲୁପ୍ତ ହୋଇଥିଲା । ଅଧୀନସ୍ଥ ରାଜାମାନେ ନିଜ ନିଜ ପ୍ରାଧାନ୍ୟ ସ୍ଥାପନ କରିବାଲାଗି ଚେଷ୍ଟା କଲେ । ସେମାନଙ୍କ ମଧ୍ୟରେ ବହୁକାଳବ୍ୟାପୀ ବିବାଦ ଉପସ୍ଥିତ ହେଲା । ଯେତେବେଳେ ଏହିପରି ବିବାଦ ଲାଗିଥିଲା, ସେତେବେଳେ ଭାରତର ଉତ୍ତର-ପଶ୍ଚିମ ଦିଗରୁ ନୂତନ ଆକ୍ରମଣକାରୀମାନେ ଉପସ୍ଥିତ ହୋଇଥିଲେ । ସେମାନେ ଆରବ ଦେଶର ମୁସଲମାନ ।

ମୁସଲମାନମାନଙ୍କର ଆକ୍ରମଣ ଓ ସିନ୍ଧୁପ୍ରଦେଶରୁ ଜୟ—ଅନେକ

ଦିନରୁ ମୁସଲମାନମାନେ ଭାରତ ଅଧିକାର କରିବାଲାଗି ଚେଷ୍ଟା କରୁଥିଲେ ଏବଂ ମଧ୍ୟେ ମଧ୍ୟେ ଭାରତକୁ ଆସି ଲୁଟିକରି ଚାଲିଯାଉଥିଲେ । ୭୧୧ ଖ୍ରୀ: ଅ: ରେ ଏପରି ଗୋଟିଏ ଘଟନା ଘଟିଥିଲା ଯେ, ମୁସଲମାନମାନେ ଭାରତ ଆକ୍ରମଣ କରିବାଲାଗି ନିଯୁମିତରୂପେ ସୈନ୍ୟ ପଠାଇଥିଲେ । ଏହି ବର୍ଷ ସିଂହଳର ରାଜା ପାରସ୍ୟର ମୁସଲମାନ ଶାସନକର୍ତ୍ତା ହିଜାଜଙ୍କ ପାଖକୁ ଉପଢୌକନ ଓ ଯାତ୍ରୀସହ କେତେଖଣ୍ଡି ଜାହାଜ ପଠାଇଥିଲେ । ସିନ୍ଧୁପ୍ରଦେଶର ଉପକୂଳବର୍ତ୍ତୀ ଜଳଦସ୍ୟୁମାନେ ଏହିସବୁ ଜାହାଜ ଲୁଟି କରିଥିଲେ । ହିଜାଜ କ୍ଷତିପୂରଣ ସକାଶେ ସିନ୍ଧୁପ୍ରଦେଶର ରାଜା ଡାହିରଙ୍କ ପାଖରେ ଦାବୀ କଲେ । ଜଳଦସ୍ୟୁମାନଙ୍କ ଉପରେ କିଛି କ୍ଷମତା ନାହିଁ ବୋଲି କହି ଡାହିର କ୍ଷତିପୂରଣ ଦେବା ସକାଶେ ଅସ୍ୱୀକାର କଲେ । ପାରସ୍ୟର ଶାସନକର୍ତ୍ତା ଏହି ଛଳନାରେ ଡାମସ୍କସ୍‌ର ଖଲିଫଙ୍କଠାରୁ ଅନୁମତି ଆଣି ଡାହିରଙ୍କ ବିରୁଦ୍ଧେ ସୈନ୍ୟ ପଠାଇଲେ । ମାତ୍ର ମୁସଲମାନମାନେ ପରାଜିତ ହେଲେ । ପାରସ୍ୟର ଶାସନକର୍ତ୍ତା ଆଉ ଥରେ ସୈନ୍ୟ ପଠାଇଥିଲେ ; କିନ୍ତୁ ଏଥର ସୁଦ୍ଧା ସେମାନେ ପରାଜିତ ହେଲେ । ହିଜାଜ ତତ୍ପରେ ତାଙ୍କର ଜାମାତା କାସିମଙ୍କୁ ଅନେକ ସୈନ୍ୟସହ ପଠାଇଥିଲେ । ଏଥର ଡାହିର ଯୁଦ୍ଧରେ ପରାଜିତ ହୋଇ ନିହତ ହେଲେ । ତତ୍ପରେ ମୁସଲମାନମାନେ ମୁଲତାନ ଅଧିକାର କଲେ । ଏହିରୂପେ ସିନ୍ଧୁପ୍ରଦେଶ ମୁସଲମାନମାନଙ୍କ ହସ୍ତଗତ ହେଲା ।

ଉତ୍ତର-ଭାରତବର୍ଷର ଅବସ୍ଥା—ନବମ ଶତାବ୍ଦୀର ମଧ୍ୟଭାଗରେ ଭାରତର ରାଜନୈତିକ ଅବସ୍ଥା ନୂତନ ଆକାର ଧରିଥିଲା । ଉତ୍ତର-ଭାରତରୁ ସାମ୍ରାଜ୍ୟ ଲୋପ ପାଇ ତାହା ସାନ ସାନ ରାଜ୍ୟରେ ବିଭକ୍ତ ହୋଇଥିଲା । ପ୍ରତ୍ୟେକ ରାଜ୍ୟରେ ନବ ଶାସନ ଓ ଧର୍ମ୍ମ ଚଳିଥିଲା । ଏହି

ରାଜ୍ୟମାନଙ୍କ ମଧ୍ୟରେ କାଶ୍ମୀର, ପଞ୍ଜାବ, ଆଜମୀର, ଗୁଜରାଟ, ମାଳବ, ମାଲବାର, କାଳଞ୍ଜର, କାନ୍ୟକୁବ୍ଜ, ମଗଧ ଓ ବଙ୍ଗ ପ୍ରଧାନ ଥିଲା ।

ରାଜପୁତମାନେ ଅଧିକାଂଶ ରାଜ୍ୟରେ ରାଜପଣ କରୁଥିଲେ । ସେମାନେ କ୍ଷତ୍ରିୟ ଓ ସିଥୀୟମାନଙ୍କଠାରୁ ଉତ୍ପନ୍ନ । ଯେତେବେଳେ ଉତ୍ତର-ଭାରତର ହିନ୍ଦୁରାଜାମାନେ କଳହ କରି ଦୁର୍ବଳ ହେଲେ, ସେତେବେଳେ ରାଜପୁତମାନେ ସେମାନଙ୍କ ଦେଶ ଅଧିକାର କରି ପ୍ରାଧାନ୍ୟ ସ୍ଥାପନ କଲେ । ଏହିରୂପେ ନବମ ଶତାବ୍ଦୀର ମଧ୍ୟଭାଗରେ ଦେଖାଗଲା ଯେ, ଚୌହାନ-ରାଜପୁତମାନେ ଆଜମୀରରେ, ପାରମାର ରାଜପୁତମାନେ ମାଳବରେ, ସୋଲାଙ୍କି ରାଜପୁତମାନେ ଗୁଜରାଟରେ ଏବଂ ଗହଲଟ ରାଜପୁତମାନେ ମାଲବାରରେ ପ୍ରାଧାନ୍ୟ ସ୍ଥାପନ କରିଅଛନ୍ତି । ବୁନ୍ଦେଲଖଣ୍ଡର ନିକଟବର୍ତ୍ତୀ ଚନ୍ଦେଲ ରାଜପୁତମାନେ ଚେଦୀମାନଙ୍କଠାରୁ କାଳଞ୍ଜର ନେଇ ପରାକ୍ରମୀ ହୋଇଥିଲେ । ମାମୁଦ କେବଳ ପଞ୍ଜାବ ପ୍ରଦେଶ ଅଧିକାର କରି ତାହାକୁ ନିଜ ରାଜ୍ୟଭୁକ୍ତ କରିଥିଲେ ।

ଦାକ୍ଷିଣାତ୍ୟର ରାଷ୍ଟ୍ରକୂଟ ସାମ୍ରାଜ୍ୟ—ଦକ୍ଷିଣ ଭାରତରେ ମଧ୍ୟ ଘୋର ପରିବର୍ତ୍ତନ ଘଟିଥିଲା । ପୂର୍ବେ କୁହାଯାଇଅଛି ଯେ, ଚାଲୁକ୍ୟମାନେ ପଲ୍ଲବ ଓ ଅନ୍ୟାନ୍ୟ ନିକଟବର୍ତ୍ତୀ ରାଜାମାନଙ୍କୁ ଦମନ କରି ଏକ ସାମ୍ରାଜ୍ୟ ଗଠନ କରିଥିଲେ । କିନ୍ତୁ ଅଷ୍ଟମ ଶତାବ୍ଦୀର ମଧ୍ୟଭାଗରେ ସେମାନଙ୍କର କ୍ଷମତା ହ୍ରାସ ପାଇଲା ଏବଂ ରାଷ୍ଟ୍ରକୂଟମାନଙ୍କର କ୍ଷମତା ବର୍ଦ୍ଧିତ ହେବାରୁ ସେମାନେ ଚାଲୁକ୍ୟମାନଙ୍କୁ ଦମନ କରିଥିଲେ । ସେମାନେ ମାନ୍ୟକ୍ଷେତକୁ ରାଜଧାନୀ କରି ଏକ ସାମ୍ରାଜ୍ୟ ସ୍ଥାପନ କଲେ । କିନ୍ତୁ ୯୭୩ ରେ ଚାଲୁକ୍ୟମାନେ ରାଷ୍ଟ୍ରକୂଟମାନଙ୍କୁ ପରାସ୍ତ କରି ପୁନର୍ବାର ଏକ ସାମ୍ରାଜ୍ୟ ଗଠନ କଲେ । ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ପୁଣି ସେମାନଙ୍କର କ୍ଷମତା ହ୍ରାସ ହେବାରୁ ସେମାନଙ୍କ ଅଧୀନସ୍ଥ ରାଜାମାନେ ସ୍ୱାଧୀନ ହେବାକୁ

ଲାଗିଲେ । ଅବଶେଷରେ ଯାଦବମାନେ ଚାଲୁକ୍ୟମାନଙ୍କର କ୍ଷମତା ଲୋପ କରିଥିଲେ ।

ଦେବଗିରି ଓ ଦ୍ୱାରସମୁଦ୍ର ନାମକ ଦୁଇଗୋଟି ଯାଦବରାଜ୍ୟ—ଯାଦବମାନେ ମହାଭାରତବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ବଂଶୀୟ ବୋଲି ପରିଚିତ । ଯେଉଁ ସମୟରେ ରାଷ୍ଟ୍ରକୂଟମାନେ ଦାକ୍ଷିଣାତ୍ୟରେ ପ୍ରବଳ ଥିଲେ, ସେ ସମୟରେ ଯାଦବମାନେ ଦାକ୍ଷିଣାତ୍ୟକୁ ଆସି ବାସ କରିଥିଲେ । ସେମାନଙ୍କ ସର୍ଦ୍ଦାରମାନେ ପ୍ରଥମେ ରାଷ୍ଟ୍ରକୂଟମାନଙ୍କର ଅଧୀନରେ, ତତ୍ପରେ ସେମାନଙ୍କର ପତନପରେ ଚାଲୁକ୍ୟମାନଙ୍କ ଅଧୀନରେ ରହିଥିଲେ । ଏକଦଳ ଆଧୁନିକ ଖାନ୍ଦେଶର ନିକଟବର୍ତ୍ତୀ ସ୍ଥାନମାନଙ୍କରେ, ଆଉଦଳେ ମହୀସୁରରେ ରାଜତ୍ୱ କରୁଥିଲେ । ଚାଲୁକ୍ୟମାନେ ଦୁର୍ବଳ ହେବାରୁ ଏହି ଦୁଇ ଯାଦବଦଳ ଚାଲୁକ୍ୟସାମ୍ରାଜ୍ୟ ଧ୍ୱଂସ କଲେ । ଖାନ୍ଦେଶ-ଯାଦବଦଳର ରାଜଧାନୀ ଦେବଗିରି, ଏବଂ ମହୀସୁର-ଯାଦବଦଳର ରାଜଧାନୀ ଦ୍ୱାରସମୁଦ୍ର ହେଲା । ଅବଶେଷରେ ଦେବଗିରିର ଯାଦବମାନେ ଅତ୍ୟନ୍ତ କ୍ଷମତାଶାଳୀ ହୋଇଥିଲେ ।

କାକତୀୟ ରାଜ୍ୟ—କାକତୀୟ ନାମକ ଆଉ ଗୋଟିଏ ଜାତି ଚାଲୁକ୍ୟମାନଙ୍କର ପତନସମୟରେ ଦାକ୍ଷିଣାତ୍ୟରେ ପରାକ୍ରମୀ ହୋଇଥିଲେ । ସେମାନଙ୍କର ରାଜଧାନୀ ୱାରଙ୍ଗଲ ଥିଲା । ସେମାନେ ପ୍ରଥମେ ଚାଲୁକ୍ୟମାନଙ୍କର ଅଧୀନ ଥିଲେ, କିନ୍ତୁ ଦ୍ୱାଦଶ ଶତାବ୍ଦୀର ମଧ୍ୟଭାଗରେ ସେମାନେ ସ୍ୱାଧୀନ ହୋଇଥିଲେ ।

ଦାକ୍ଷିଣାତ୍ୟର ଚାରି ପୁରାତନ ରାଜ୍ୟ—ଦ୍ୱାଦଶ ଶତାବ୍ଦୀରେ ପୁରାତନ ଚେର, ଚୋଳ, ପାଣ୍ଡ୍ୟ ଓ ପଲ୍ଲବର ଅସ୍ତିତ୍ୱ ପ୍ରାୟ ଲୋପ ପାଇଥିଲା । ଏକାଦଶ ଶତାବ୍ଦୀରେ ଚୋଳରାଜ୍ୟ ପ୍ରଥମେ ରାଜେନ୍ଦ୍ରଚୋଳଙ୍କ ଅଧୀନରେ

ଟିକଏ କ୍ଷମତାଶାଳୀ ହୋଇଥିଲା, ଏକାଦଶ ଶତାବ୍ଦୀର ଶେଷଭାଗରେ ଚୈଲୁକ୍ୟବଂଶର ଦ୍ୱିତୀୟ ରାଜେନ୍ଦ୍ରଚୋଳ ନାମକ ଏକ ରାଜା ଚୋଳରାଜ୍ୟ ଅଧିକାର କଲେ ।

ଓଡ଼ିଶାର ଗଙ୍ଗାବଂଶୀୟ ରାଜ୍ୟ—ଦ୍ୱିତୀୟ ରାଜେନ୍ଦ୍ରଚୋଳଙ୍କର ଏକ କନ୍ୟା କଳିଙ୍ଗର ରାଜା ରାଜରାଜଙ୍କୁ ବିବାହ କରିଥିଲେ । ଏମାନଙ୍କ ପୁଅ ଚୋରଗଙ୍ଗଦେବ (ଚୁଡ଼ଙ୍ଗଦେବ) ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶା ଅଧିକାର କରି ଗଙ୍ଗାବଂଶ ସ୍ଥାପନ କରିଥିଲେ ।

ଅନ୍ୟାନ୍ୟ ରାଜ୍ୟ—କାଶ୍ମୀରରେ ଉତ୍ପଳବଂଶୀୟମାନେ ରାଜତ୍ୱ କରୁଥିଲେ । ମଗଧଦେଶରେ ପାଳବଂଶ ଏବଂ ବଙ୍ଗଦେଶରେ ଶୂରବଂଶ ରାଜତ୍ୱ କରୁଥିଲେ ।

ଏହିସବୁ ସ୍ୱାଧୀନ ରାଜ୍ୟସମୂହ ନିଜ ନିଜ ମଧ୍ୟରେ କଳହ କରି ଦୁର୍ବଳ ହେବାରୁ ମୁସଲମାନ-ଆକ୍ରମଣର ସୁବିଧା ହୋଇଥିଲା । ବାସ୍ତବିକ ଦଶମ ଶତାବ୍ଦୀଠାରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଉତ୍ତର-ଭାରତର ଇତିହାସ ଏହିସବୁ ସ୍ୱାଧୀନ ରାଜ୍ୟର କଳହ ଓ ମୁସଲମାନମାନଙ୍କର ଆକ୍ରମଣରେ ପରିପୂର୍ଣ୍ଣ ।

ଗଜନୀରାଜ୍ୟର ସ୍ଥାପନ—୯୬୨ ଖ୍ରୀ: ଅ: ରେ ଆଲପ୍ତଗିନ୍ ଗଜନୀରେ ଏକ ପଠାଣରାଜ୍ୟ ସ୍ଥାପନ କଲେ । ଏହାଙ୍କ ଅନ୍ତେ ସବକ୍ତଗିନ ଗଜନୀର ରାଜା ହେଲେ (୯୭୭) । ସେ ଭାରତ ଆକ୍ରମଣ କରି କେତେଗୁଡ଼ିଏ ସୀମାନ୍ତ ଦୁର୍ଗ ଅଧିକାର କରିଥିଲେ । ଲାହୋରର ରାଜା ଜୟପାଳ ଏଥିରେ ରାଗାନ୍ୱିତ ହୋଇ ଗଜନୀ ଆକ୍ରମଣ କଲେ । କିନ୍ତୁ ଶୀତକାଳର ବରଫ ପଡ଼ିବାରୁ ସେ ବାଧ୍ୟ ହୋଇ ଫେରିଆସିଥିଲେ, ଏବଂ ଅନେକ ଟଙ୍କା ଦେବାକୁ ସ୍ୱୀକୃତ ହୋଇଥିଲେ । ଦେଶକୁ ଫେରିଆସି ଜୟପାଳ ଟଙ୍କା ଦେବାକୁ ଅସ୍ୱୀକାର କରିବାରୁ ସବକ୍ତଗିନ୍ ପଞ୍ଜାବକୁ ଆସି ଜୟପାଳଙ୍କୁ ପରାସ୍ତ କଲେ ଏବଂ ସିନ୍ଧୁନଦୀ ପର୍ଯ୍ୟନ୍ତ ସମସ୍ତ ଦେଶ ଜୟ କଲେ ।

ସୁଲତାନ ମାମୁଦଙ୍କ ଭାରତ-ଆକ୍ରମଣ—ସବକ୍ତଗିନଙ୍କ ଅନ୍ତେ ମାମୁଦ ଗଜନୀର ସୁଲତାନ ହେଲେ (୯୯୭) । ମାମୁଦ ନିଜରାଜ୍ୟ ବୃଦ୍ଧିପାଇଁ କରି ଭାରତ ଆକ୍ରମଣ କଲେ । ସେ ୧୭ ଥର ଭାରତ ଆକ୍ରମଣ କରି-ଥିଲେ । ଏହାଙ୍କର ଅଧିକାଂଶ ଆକ୍ରମଣରେ ଲକ୍ଷ୍ୟସ୍ଥଳ ପଞ୍ଜାବ ଥିଲା । ଜୟପାଳ ଏହାଙ୍କୁ ବାଧା ଦେଇ ନିଜେ ପରାଜିତ ହେଲେ, ଏବଂ ଆତ୍ମ-ହତ୍ୟା କଲେ (୧୦୦୧) । ଜୟପାଳଙ୍କ ପୁତ୍ର ଅନଙ୍ଗପାଳ କେତେକ ବର୍ଷ ମାମୁଦଙ୍କ ବଶ୍ୟତା ସ୍ୱୀକାର କରି ରହିଥିଲେ । କିନ୍ତୁ ଅବଶେଷରେ ବିଦ୍ରୋହୀ ହୋଇ ପରାଜିତ ହେଲେ (୧୦୦୯) । ମାମୁଦ ୧୦୨୧ ରେ ଲାହୋରକୁ ନିଜ ରାଜ୍ୟଭୁକ୍ତ କଲେ । ମାମୁଦ ଆଉ ଯେତେ ଥର ଭାରତକୁ ଆକ୍ରମଣ କରିଥିଲେ ସେତେ ଥର ଲୁଟି କରିବା ତାଙ୍କର ଅଭିପ୍ରାୟ ଥିଲା । ସେ ୧୦୧୪ ଖ୍ରୀଷ୍ଟାବ୍ଦରେ ଥାନେଶ୍ୱର ମନ୍ଦିର ଏବଂ ୧୦୧୮ ରେ ମଥୁରା ସହର ଲୁଟି କରିଥିଲେ । ସେ ସର୍ବଶେଷ ଥର ଗୁଜରାଟର ସୋମନାଥ ମନ୍ଦିର ଲୁଟି କରିଥିଲେ । ୧୦୨୪ ଖ୍ରୀ: ଅ: ର ସେପ୍ଟେମ୍ବରମାସରେ ମାମୁଦ ଗଜନୀ ପରିତ୍ୟାଗ କରି ଅନେକ ଦିନପରେ ଗୁଜରାଟର ରାଜଧାନୀରେ ଉପସ୍ଥିତ ହୋଇଥିଲେ । ଏହା ଦେଖି ଗୁଜ-ରାଟର ରାଜା ପଳାଇଗଲେ ଏବଂ ମାମୁଦ ୧୦୨୬ ଜାନୁଆରୀରେ ସୋମନାଥରେ ପହଞ୍ଚିଲେ । ସେବକମାନେ ବାଧା ଦେଇ ପରାଜିତ ହେଲେ । ମାମୁଦ ମନ୍ଦିର ଲୁଟି କଲେ ଏବଂ ସୋମନାଥମୂର୍ତ୍ତିଙ୍କୁ ଭାଙ୍ଗିଦେଲେ । ସେ ମନ୍ଦିରରୁ ପ୍ରଚୁର ଧନ ପାଇଥିଲେ । କଥିତ ଅଛି, ସେବକମାନେ ମୂର୍ତ୍ତିଙ୍କୁ ନ ଭାଙ୍ଗିବା ଲାଗି ଅନେକ ଟଙ୍କା ଯାଚିଥିଲେ, କିନ୍ତୁ ମାମୁଦ ମୂର୍ତ୍ତି ଭାଙ୍ଗି ସେବକମାନଙ୍କର ଅଙ୍ଗୀକୃତ ଧନର ଦ୍ୱିଗୁଣ ଧନ ପ୍ରାପ୍ତ ହୋଇଥିଲେ ।

ଦ୍ୱାଦଶ ଶତାବ୍ଦୀର ଶେଷଭାଗରେ ଭାରତ—ଏହି ସମୟରେ ଦାକ୍ଷି-ଣାତ୍ୟ ଅନେକ ସ୍ୱାଧୀନ ରାଜ୍ୟରେ ବିଭକ୍ତ ହୋଇଥିଲା । ସେମାନଙ୍କ

ମଧ୍ୟରେ ଦେବଗିରି ଓ ଦ୍ୱାରସମୁଦ୍ରର ଯାଦବରାଜ୍ୟ, ୱାରଙ୍ଗଲର କାକତୀୟ ରାଜ୍ୟ ଏବଂ ଓଡ଼ିଶାର ଗଙ୍ଗାବଂଶୀୟ ରାଜ୍ୟ ପ୍ରଧାନ ଥିଲା । ଉତ୍ତର-ଭାରତର ଅବସ୍ଥା ଏହାଠାରୁ ବହୁ ଶୋଚନୀୟ ଥିଲା । କାଶ୍ମୀରରେ ଉତ୍ପଳବଂଶର ପତନ ହୋଇଥିଲା । ସେଠାରେ ଲୋହାର୍‌ବଂଶ ରାଜତ୍ୱ କରୁଥିଲେ । ପାରମାରବଂଶର ରାଜା ମାଳବ ଏବଂ ଗୁଜରାଟରେ ରାଜତ୍ୱ କରୁଥିଲେ । ବଙ୍ଗଳାରେ ଏକାଦଶ ଶତାବ୍ଦୀର ଶେଷଭାଗରେ ସେନବଂଶ ପ୍ରାଧାନ୍ୟ ଲାଭ କରିଥିଲା, ଏବଂ ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗରେ ବଲ୍ଲାଳସେନ ପାଳବଂଶଠାରୁ ମଗଧର ଅନେକାଂଶ ଛଡ଼ାଇ ନେଇଥିଲେ । ରାଷ୍ଟ୍ରକୂଟ ବା ରଠୋରମାନେ କାନ୍ୟକୁବ୍ଜରେ ନିଜ ପ୍ରାଧାନ୍ୟ ସ୍ଥାପନ କରିଥିଲେ ଏବଂ ଚୌହାନରାଜା ପୃଥ୍ୱୀରାଜ ଆଜମୀର ଓ ଦିଲ୍ଲୀରେ ରାଜତ୍ୱ କରୁଥିଲେ ।

ପଠାଣମାନଙ୍କ କର୍ତ୍ତୃକ ଉତ୍ତର-ଭାରତରେ ବିଜୟ—ଯେତେବେଳେ ଭାରତର ଏହିପରି ଅବସ୍ଥା, ସେତେବେଳେ ଅଫଗାନିସ୍ଥାନରେ ଗଜନୀରାଜ୍ୟର ପତନ ହୋଇଥିଲା । ଘୋରବଂଶୀୟ ରାଜାମାନେ ପରାକ୍ରମୀ ହୋଇ ଗଜନୀରାଜାଙ୍କଠାରୁ ପଞ୍ଜାବପ୍ରଦେଶ ଅଧିକାର କରିନେଇଥିଲେ । ଅତଏବ ଘୋରରାଜ୍ୟ ଏବଂ ପୃଥ୍ୱୀରାଜଙ୍କ ରାଜ୍ୟ ଲଗାଲଗି ହୋଇଥିଲା । ଏହି ସମୟରେ ଜୟଚନ୍ଦ୍ର ଓ ପୃଥ୍ୱୀରାଜଙ୍କ ମଧ୍ୟରେ କଳହ ଲାଗିବାରୁ ଜୟଚନ୍ଦ୍ର ଘୋରସର୍ଦ୍ଦାର ମହମ୍ମଦଘୋରୀଙ୍କୁ ପୃଥ୍ୱୀରାଜଙ୍କ ରାଜ୍ୟ ଆକ୍ରମଣ କରିବାଲାଗି ଆହ୍ୱାନ କରିଥିଲେ । ମହମ୍ମଦଘୋରୀ ଏହି ସୁବିଧା ପ୍ରାପ୍ତ ହୋଇ ୧୧୯୧ ରେ ଭାରତ ଆକ୍ରମଣ କଲେ । କିନ୍ତୁ ପୃଥ୍ୱୀରାଜଦ୍ୱାରା ପରାଜିତ ହୋଇ ସ୍ୱଦେଶକୁ ପଳାୟନ କଲେ । ୧୧୯୩ ରେ ସେ ପୁଣି ଭାରତ ଆକ୍ରମଣ କଲେ । ଏଥର ପୃଥ୍ୱୀରାଜ ଥାନେଶ୍ୱରଯୁଦ୍ଧରେ ପରାଜିତ ଓ ନିହତ ହେବାରୁ ଅଜମୀର ଓ ଦିଲ୍ଲୀ ମୁସଲମାନ-

ମାନଙ୍କର ହସ୍ତଗତ ହେଲା । ତତ୍ପରେ ମହମ୍ମଦଙ୍କର ସେନାପତ ଜୁତବୁଦ୍ଦିନ କାଲଞ୍ଜର ଅଧିକାର କଲେ । ୧୧୯୪ ରେ ସେ କାନ୍ୟକୁବ୍ଜପତ ଜୟଚନ୍ଦ୍ରଙ୍କୁ ପରାସ୍ତ କର ହତ୍ୟା କଲେ ଓ କାନ୍ୟକୁବ୍ଜ ଅଧିକାର କଲେ । ୧୧୯୯ ରେ ବକ୍ତିୟାର ଖିଲ୍‌ଜି ନାମକ କୁତବୁଦ୍ଦିନଙ୍କ ସେନାପତ ମଗଧଦେଶ ଏବଂ ୧୨୦୩ ରେ ବଙ୍ଗଦେଶ ଜୟ କଲେ । ଏହିରୂପେ ଥାନେଶ୍ୱରର ଯୁଦ୍ଧର ୭ । ୮ ବର୍ଷ ମଧ୍ୟରେ ପଠାଣମାନେ ଉତ୍ତର ଭାରତର ଅଧିକାଂଶ ସ୍ଥାନ ଅଧିକାର କରଥିଲେ । କନ୍ତୁ ଦାକ୍ଷି-ଣାତ୍ୟକୁ ଯିବାଲାଗି ସେମାନଙ୍କୁ ଆହୁର ୧୦୦ ବର୍ଷ ଲାଗିଥିଲା ।

ପଠାଣସାମ୍ରାଜ୍ୟ-ସ୍ଥାପନ—ମହମ୍ମଦଘୋରୀ କୁତବୁଦ୍ଦିନଙ୍କୁ ଭାରତ-ଅଧିକୃତ ସ୍ଥାନମାନଙ୍କର ଶାସନକର୍ତ୍ତା କର ସ୍ୱଦେଶକୁ ଫେରଯାଇଥିଲେ । ୧୨୦୬ ରେ ତାଙ୍କର ମୃତ୍ୟୁ ହେବାରୁ କୁତବୁଦ୍ଦିନ ଆପଣାକୁ ଉତ୍ତର ଭାରତର ସମ୍ରାଟ୍ ବୋଲି ଘୋଷଣା କଲେ । ଦଲ୍ଲୀ ତାଙ୍କର ରାଜଧାନୀ ହୋଇଥିଲା ।

---

## ୭ଷ୍ଠ ଅଧ୍ୟାୟ ।

### ବ୍ରାହ୍ମଣ୍ୟଧର୍ମ୍ମର ପୁନରୁତ୍ଥାନ ଯୁଗ ।

### (ଖ) ସାମାଜିକ ଅବସ୍ଥା ।

ସାହତ୍ୟ ଓ ବିଜ୍ଞାନର ଉନ୍ନତ—ଭାରତବର୍ଷ କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ରାଜ୍ୟରେ ବିଭକ୍ତ ହେବାରୁ ସାହତ୍ୟ ଓ ବିଜ୍ଞାନର ଉନ୍ନତ-ପଥ ସୁଗମ ହୋଇ-ଥିଲା । ଅଷ୍ଟମ ଶତାବ୍ଦୀରେ ପ୍ରସିଦ୍ଧ କବ ଭବଭୂତ ଜନ୍ମଗ୍ରହଣ କରଥିଲେ । କାଳିଦାସଙ୍କପର ଏ ଜଣେ ବିଖ୍ୟାତ ନାଟକ-ଲେଖକ ଥିଲେ । ମହାବୀର-ଚରତ ଓ ଉତ୍ତରରାମଚରତ ଏହାଙ୍କ ଦ୍ୱାରା ରଚତ । ୧୧୪୯ ରେ

କଲହନ୍ ନାମକ ଏକ ଇତିହାସ-ଲେଖକ ରାଜତରଙ୍ଗିଣୀ ନାମକ କାଶ୍ମୀରର ଇତିହାସ ଲେଖିଥିଲେ । ଦ୍ୱାଦଶ ଶତାବ୍ଦୀର ପ୍ରଥମ ଭାଗରେ ପ୍ରସିଦ୍ଧ ଜ୍ୟୋତିର୍ବିଦ୍ ପଣ୍ଡିତ ଭାସ୍କରାଚାର୍ଯ୍ୟ ଜନ୍ମଗ୍ରହଣ କରିଥିଲେ । ସେ ଦାକ୍ଷିଣାତ୍ୟର ଲୋକ ଥିଲେ । ତାଙ୍କର ସିଦ୍ଧାନ୍ତଶିରୋମଣିରେ ସେ ସପ୍ରମାଣ କରିଅଛନ୍ତି ଯେ, ପୃଥିବୀ ଗୋଲ ଏବଂ ତାହାର କ୍ଷୁଦ୍ର ପଦାର୍ଥ-ମାନଙ୍କୁ ଆକର୍ଷଣ କରିବାର ଶକ୍ତି ଅଛି ।

ହିନ୍ଦୁ-ଶିଳ୍ପର ପୁନରୁତ୍ଥାନ—ବୌଦ୍ଧଧର୍ମର ପତନ ସଙ୍ଗେ ସଙ୍ଗେ ବୌଦ୍ଧ ଶିଳ୍ପ ଓ ଭାସ୍କର ବିଦ୍ୟାର ଅବନତି ଘଟିଥିଲା । କିନ୍ତୁ ହିନ୍ଦୁମାନ-ଙ୍କର ପୁନରୁତ୍ଥାନରେ ହିନ୍ଦୁମାନଙ୍କର ଶିଳ୍ପ ଓ ଭାସ୍କର ବିଦ୍ୟାର ଉନ୍ନତି ହୋଇଥିଲା । ଇଲୋରାର ପର୍ବତଗୁହାର ମନ୍ଦିରମାନ ଅଷ୍ଟମ ଶତାବ୍ଦୀରେ ନିର୍ମିତ ହୋଇଥିଲା । ସେଗୁଡ଼ିକର ଶିଳ୍ପକର୍ମ ହିନ୍ଦୁମାନଙ୍କର ନୈପୁଣ୍ୟ ପ୍ରକାଶ କରୁଅଛି । ଓଡ଼ିଶାରେ ପୁରୀର ଜଗନ୍ନାଥମନ୍ଦିର ଦ୍ୱାଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲା । ଏହାର ଶିଳ୍ପ ଓ କାରୁକାର୍ଯ୍ୟ ସେ ସମୟର ଓଡ଼ିଆମାନଙ୍କର କାର୍ଯ୍ୟ-ନୈପୁଣ୍ୟ ଦେଖାଇଦେଉଅଛି ।

ଆଧୁନିକ ହିନ୍ଦୁଧର୍ମର ଉତ୍ପତ୍ତି—ବୌଦ୍ଧଧର୍ମର ପତନ ଓ ନୂତନ ଆକୃତିରେ ବ୍ରାହ୍ମଣ୍ୟଧର୍ମର ଉଦୟ, ଏହି ସମୟର ପ୍ରଧାନ ଘଟଣା । ବୌଦ୍ଧଧର୍ମ କେବେହେଁ ବ୍ରାହ୍ମଣ୍ୟଧର୍ମର ଲୋପସାଧନ କରିପାରି ନ ଥିଲା । ଦୁଇଧର୍ମ ଏକତ୍ର ରହି କାର୍ଯ୍ୟ କରୁଥିଲେ । ଉତ୍ତର ଭାରତର ରାଜାମାନେ ବୌଦ୍ଧ ହେବାରୁ ପ୍ରଜାମାନେ ମଧ୍ୟ ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ଏଣୁ ବୌଦ୍ଧଧର୍ମ ବ୍ରାହ୍ମଣ୍ୟଧର୍ମଠାରୁ ବେଶି ଉନ୍ନତି ଲାଭ କରିଥିଲା । କିନ୍ତୁ ଯେତେବେଳେ ବ୍ରାହ୍ମଣ୍ୟଧର୍ମାବଲମ୍ବୀ ରାଜାମାନେ କ୍ଷମତାଶାଳୀ ହେଲେ ତେତେବେଳେ ବୌଦ୍ଧଧର୍ମର ପତନ ଏବଂ ବ୍ରାହ୍ମଣ୍ୟଧର୍ମର ଉନ୍ନତି ଆରମ୍ଭ ହେଲା । ଆହୁରି ମଧ୍ୟ ବ୍ରାହ୍ମଣମାନେ ପୁରାତନ ଧର୍ମକୁ ଲୋକରଞ୍ଜନ

ଆକୃତରେ ଅଣିବାକୁଗି ଚେଷ୍ଟା କରିଥିଲେ । ଏଣୁ ଦେବଦେବୀ-ମାନଙ୍କ ବିଷୟରେ କାଳ୍ପନିକ ଗଳ୍ପମାନ ପ୍ରସ୍ତୁତ ହୋଇଥିଲା। ସେମାନଙ୍କର ନାନାପ୍ରକାର ପ୍ରତିମୂର୍ତ୍ତି ସ୍ଥାପିତ ହୋଇଥିଲା । ତୀର୍ଥସ୍ଥାନମାନଙ୍କର ସଂଖ୍ୟା ବର୍ଦ୍ଧିତ ହୋଇଥିଲା । ସେଠାରେ ପୂଜା, ମେଳା, ଦାନାଦିର ସୃଷ୍ଟି ହୋଇ-ଥିଲା । ଏହି ନୂତନ ଆକୃତର ହିନ୍ଦୁଧର୍ମକୁ ପୌରାଣିକ ଧର୍ମ କୁହାଯାଏ । ଏହି ସମୟରେ ବ୍ରାହ୍ମଣମାନଙ୍କ ମଧ୍ୟରେ କେତେକ ମହାପୁରୁଷ ଜନ୍ମଗ୍ରହଣ କରି ଯୁକ୍ତିଦ୍ୱାରା ବୌଦ୍ଧମତ ଖଣ୍ଡନପୂର୍ବକ ହିନ୍ଦୁଧର୍ମର ପୁନଃ ପ୍ରଚାର ଆରମ୍ଭ କରିଥିଲେ । ତଳେ ସେମାନଙ୍କର ସଂକ୍ଷିପ୍ତ ବିବରଣ ଦିଆଗଲା ।

କୁମାରିଲ ଭଟ୍ଟ—ସେ ବିହାର ପ୍ରଦେଶରେ ଅଷ୍ଟମ ଶତାବ୍ଦୀରେ ଜନ୍ମ-ଗ୍ରହଣ କରିଥିଲେ । ସେଠାରୁ ସେ ଦାକ୍ଷିଣାତ୍ୟକୁ ଯାଇ ହିନ୍ଦୁଧର୍ମ ପ୍ରଚାର କରିଥିଲେ । ଏହାଙ୍କ ପ୍ରଚାରରେ ଅନେକ ଲୋକ ବୌଦ୍ଧଧର୍ମ ଛାଡ଼ି ହିନ୍ଦୁଧର୍ମ ଗ୍ରହଣ କରିଥିଲେ ।

ଶଙ୍କରାଚାର୍ଯ୍ୟ—ମାଳବ ପ୍ରଦେଶରେ ଏକ ଦରିଦ୍ର ବ୍ରାହ୍ମଣଗୃହରେ ଶଙ୍କରାଚାର୍ଯ୍ୟ ଜନ୍ମଗ୍ରହଣ କରିଥିଲେ (୭୮୮) । ଶଙ୍କରାଚାର୍ଯ୍ୟ ବୌଦ୍ଧ-ଧର୍ମର ବଡ଼ ବିରୋଧୀ ଥିଲେ । ସେ ଯୁକ୍ତିବଳରେ ବୌଦ୍ଧ ପଣ୍ଡିତମାନଙ୍କୁ ପରାସ୍ତ କରି ବେଦାନ୍ତମତ ସ୍ଥାପନ କରିଥିଲେ । ଏହି ମହାପୁରୁଷ ସ୍ୱମତର ପ୍ରଚାର ନିମନ୍ତେ କୁମାରିକାଠାରୁ ହିମାଳୟ ପର୍ଯ୍ୟନ୍ତ ନାନା ପ୍ରଦେଶ ବୁଲିଥିଲେ । କଥିତ ଅଛି ଅନେକ ବୌଦ୍ଧ ପଣ୍ଡିତ ଏହାଙ୍କ ଯୁକ୍ତିବଳରେ ପରାସ୍ତ ହୋଇ ଆତ୍ମହତ୍ୟା କରିଥିଲେ । ଶଙ୍କରାଚାର୍ଯ୍ୟ ୩୨ ବର୍ଷ ବୟସରେ ହିମାଳୟର କେଦାରନାଥରେ ପ୍ରାଣତ୍ୟାଗ କରିଥିଲେ (୮୨୦) । ଏହି ଅଳ୍ପକାଳମଧ୍ୟରେ ସେ ପ୍ରାୟ ସମୁଦାୟ ହିନ୍ଦୁଶାସ୍ତ୍ରମାନଙ୍କ ଉପରେ ଭାଷ୍ୟ ଲେଖିଯାଇଅଛନ୍ତି ।



ଶଙ୍କରାଚାର୍ଯ୍ୟ ।

ରାମାନୁଜ—ଶଙ୍କରାଚାର୍ଯ୍ୟଙ୍କ ଉତ୍ତାରୁ ଶୈବଧର୍ମ୍ମର ଉନ୍ନତି ହୋଇ-
ଥିଲା । ଶଙ୍କରାଚାର୍ଯ୍ୟଙ୍କ ଶିଷ୍ୟମାନେ ଭାରତର ନାନା ସ୍ଥାନରେ ଶୈବଧର୍ମ୍ମ

ପ୍ରଚାର କରିଥିଲେ । ଏହି ସମୟରେ ଓଡ଼ିଶାରେ ବୌଦ୍ଧଧର୍ମର ପରି-ବର୍ତ୍ତରେ ଶୈବଧର୍ମର ବହୁଳ ପ୍ରଚାର ହୋଇଥିଲା । ଓଡ଼ିଶାର କେଶରି-ବଂଶୀୟ ରାଜାମାନେ ଶୈବଧର୍ମାବଲମ୍ବୀ ଥିଲେ । ଏକାଦଶ ଶତାବ୍ଦୀରେ ବୈଷ୍ଣବଧର୍ମର ଆଦର ବୃଦ୍ଧି ପାଇଥିଲା । ରାମାନୁଜ ବୈଷ୍ଣବଧର୍ମପ୍ରଚା-ରକମାନଙ୍କ ମଧ୍ୟରେ ପ୍ରଥମ ଅଟନ୍ତି । ସେ ଦ୍ୱାଦଶ ଶତାବ୍ଦୀରେ ଦାକ୍ଷିଣାତ୍ୟରେ ବ୍ରାହ୍ମଣକୁଳରେ ଜନ୍ମଗ୍ରହଣ କରିଥିଲେ । ସେ ଜୀବିତ ଥିବା କାଳରେ ୭୦୦ ବୈଷ୍ଣବମଠ ସ୍ଥାପିତ ହୋଇଥିଲା । ତାହାଙ୍କ ଯତ୍ନରେ ବୈଷ୍ଣବଧର୍ମ ବହୁଦୂର ବ୍ୟାପ୍ତ ହୋଇଥିଲା । ସେ ସବୁ ଜାତିର ଲୋକଙ୍କୁ ବୈଷ୍ଣବଧର୍ମରେ ଦୀକ୍ଷିତ କରୁଥିଲେ ।

ସମ୍ବନ୍ଧ ଓ ମାନିକ୍ ବାସଗର—ଏହି ଦୁଇବ୍ୟକ୍ତି ତାମିଲ୍ କବି ଥିଲେ । ତାମିଲ୍‌ଭାଷାରେ ଏମାନଙ୍କ ରଚିତ ସ୍ତୋତ୍ରମାନଙ୍କ ଦ୍ୱାରା ଦାକ୍ଷିଣାତ୍ୟରୁ ବୌଦ୍ଧଧର୍ମର ପ୍ରାଦୁର୍ଭାବ ଅନେକ ପରିମାଣରେ କମିଯାଇଥିଲା ଏବଂ ଶୈବଧର୍ମ ଉନ୍ନତି ଲାଭ କରିଥିଲା ।

---

## ୭ମ ଅଧ୍ୟାୟ ।

### ପଠାଣମାନଙ୍କ ଶାସନରେ ଭାରତର ରାଜନୈତିକ ଅବସ୍ଥା ।

କୁତବୁଦ୍ଦିନ ଦିଲ୍ଲୀର ସମ୍ରାଟ୍ ହେବାଦିନଠାରୁ ଭାରତରେ ଏକ ନବ-ଯୁଗର ଆରମ୍ଭ ହୋଇଥିଲା । ପଠାଣମାନେ ଭାରତରେ ବାସ କରିବାକୁ ଲାଗିଲେ । ଏହାଦ୍ୱାରା ଭାରତର ରାଜନୈତିକ ଓ ସାମାଜିକ ଅବସ୍ଥାର ଅନେକ ପରିବର୍ତ୍ତନ ଘଟିଥିଲା । ଏମାନେ ୩୦୦ ବର୍ଷକାଳ ଏହି ଦେଶ ଶାସନ କରିଥିଲେ ।

ପୂର୍ବେ କୁହାଯାଇଅଛି ଯେ, ମହମ୍ମଦଘୋରୀ ୧୧୯୩ ରେ ପୃଥ୍ୱୀରାଜଙ୍କୁ ପରାସ୍ତ କରି ପଠାଣସାମ୍ରାଜ୍ୟର ପତ୍ତନ ଆରମ୍ଭ କଲେ ଏବଂ ତାଙ୍କ ଅନ୍ତେ ତାଙ୍କ ପ୍ରତିନିଧି କୁତବୁଦ୍ଦିନ ଆପଣାକୁ ଭାରତର ସମ୍ରାଟ୍ ବୋଲି ଘୋଷଣା କଲେ (୧୨୦୬) । ସେ ଯେତେବେଳେ ସମ୍ରାଟ୍ ହେଲେ ତେତେବେଳେ ପଞ୍ଜାବ, ଦିଲ୍ଲୀ, କାଲଞ୍ଜର, କାନ୍ୟକୁବ୍ଜ, ମଗଧ ଓ ବଙ୍ଗ ତାହାଙ୍କ ଅଧିକାରରେ ଥିଲା ।

ଦାସବଂଶୀୟ ରାଜାମାନଙ୍କର ଶାସନ, ୧୨୦୬-୧୨୯୦—କୁତବୁଦ୍ଦିନ ଏହି ବଂଶର ସ୍ଥାପନକର୍ତ୍ତା । ସେ ନିଜେ ଓ ଏହି ବଂଶର ଅନେକ ସମ୍ରାଟ ଦାସ ଥିବାରୁ ଏହି ବଂଶକୁ ଦାସବଂଶ କୁହାଯାଏ । ଆଲ୍‌ତାମସ୍ ଏହି ବଂଶର ପ୍ରସିଦ୍ଧ ରାଜା ଥିଲେ । ସେ ୧୨୨୮ ରେ ସିନ୍ଧୁପ୍ରଦେଶକୁ ପଠାଣରାଜ୍ୟଭୁକ୍ତ କରିଥିଲେ । ଏହାଙ୍କ ସମୟରୁ ମୋଗଲମାନେ ଭାରତ ଆକ୍ରମଣ କରିବାକୁ ଆରମ୍ଭ କଲେ । ନସିରୁଦ୍ଦିନଙ୍କ ସମୟରେ ମାଲବ ଦେଶ ବଶ୍ୟତାସ୍ୱୀକାର କରିଥିଲା, ଏବଂ ମିବାରର ରାଜପୁତମାନେ ବିଦ୍ରୋହୀ ହୋଇ ପରାଜିତ ହୋଇଥିଲେ । ବୁଲବନଙ୍କ ସମୟରେ ବଙ୍ଗଳାର ଶାସନକର୍ତ୍ତା ତୁଗ୍ରଲଖାଁ ବିଦ୍ରୋହୀ ହୋଇ ପରାଜିତ ଓ ନିହତ ହୋଇଥିଲେ । ଏହି ବଂଶର ଶେଷ ସମ୍ରାଟ୍ କାଇକୋବାଦଙ୍କୁ ତାଙ୍କର ମନ୍ତ୍ରୀ ଜେଲାଲ୍‌ଉଦ୍ଦିନ ଖିଲ୍‌ଜି ହତ୍ୟା କରି ସ୍ୱୟଂ ସମ୍ରାଟ୍ ହେଲେ ।

ଖିଲ୍‌ଜିବଂଶୀୟ ରାଜାମାନଙ୍କ ଶାସନ ୧୨୯୦-୧୩୨୦—ଜେଲାଲ୍‌ଉଦ୍ଦିନ ଖିଲ୍‌ଜି ଏହି ବଂଶର ସ୍ଥାପନକର୍ତ୍ତା । ଏହାଙ୍କ ଅମଳରେ ପଠାଣମାନେ ଦାକ୍ଷିଣାତ୍ୟ ଆକ୍ରମଣ କରିବାକୁ ଆରମ୍ଭ କଲେ । ଏହାଙ୍କ ଭ୍ରାତୁଷ୍ପୁତ୍ର ଆଲ୍ଲାଉଦ୍ଦିନ ପୂର୍ବ ମାଳବ ଅଧିକାର କରି ମହାରାଷ୍ଟ୍ର ପ୍ରଦେଶର ଦେବଗିରି ଯାଦବମାନଙ୍କୁ ପରାସ୍ତ କରିଥିଲେ । ସେ ସେମାନଙ୍କଠାରୁ ଏଲିଚପୁର ନଗର ଏବଂ ପ୍ରଚୁର ଅର୍ଥ ନେଇଥିଲେ । ଆଲ୍ଲାଉଦ୍ଦିନ ସମ୍ରାଟ୍

ହୋଇ ୧୨୯୭ରେ ଗୁଜରାଟକୁ ନିଜ ରାଜ୍ୟଭୁକ୍ତ କଲେ ! ସେ ୧୩୦୩ରେ ଚିତୋର ଦୁର୍ଗ ଅଧିକାର କଲେ । ମାଳବପ୍ରଦେଶ ମଧ୍ୟ ପଠାଣ-ରାଜ୍ୟଭୁକ୍ତ ହେଲା । ସେ ଏହିରୂପେ ଉତ୍ତର ଭାରତବର୍ଷ ସମ୍ପୂର୍ଣ୍ଣରୂପେ ଅଧିକୃତ କରି ଦାକ୍ଷିଣାତ୍ୟ ଜୟ କରିବାକୁ ବାହାରିଲେ । ତାଙ୍କ ସେନାପତି ମାଲିକ୍ କାଫୁର୍ ୧୩୦୭ ରେ ଦେବଗିରିର ଯାଦବରାଜ୍ୟ ଆକ୍ରମଣ କରି-ଥିଲେ । ସେଠାର ରାଜା ବଶ୍ୟତା ସ୍ୱୀକାର କରି କରଦରାଜା ହୋଇ ରହିଲେ । ତତ୍ପରେ ସେ ବାରଙ୍ଗଲର କାକତୀୟମାନଙ୍କୁ ଏବଂ ଦ୍ୱାର-ସମୁଦ୍ରର ହୟଶାଳା ଯାଦବମାନଙ୍କୁ ପରାସ୍ତ କରି ଦିଲ୍ଲୀସମ୍ରାଟଙ୍କ ଅଧୀନ କରିଥିଲେ । ଏହିପରି ବିନ୍ଧ୍ୟପର୍ବତଠାରୁ କୁମାରିକା ପର୍ଯ୍ୟନ୍ତ ପ୍ରାୟ ସମସ୍ତ ଦେଶ ପଠାଣସମ୍ରାଟଙ୍କ ବଶ୍ୟତା ସ୍ୱୀକାର କଲା (୧୩୧୧) । ଆଲ୍ଲା-ଉଦ୍ଦିନଙ୍କ ସମୟରେ ମୋଗଲମାନେ ଭାରତ ଆକ୍ରମଣ କରି ଅକୃତକାର୍ଯ୍ୟ ହୋଇଥିଲେ । ଏହାଙ୍କ ଶେଷାବସ୍ଥାରେ ଗୁଜରାଟ ବିଦ୍ରୋହୀ ହୋଇଥିଲା । ରାଜପୁତମାନେ ପୁନର୍ବାର ଚିତୋର ଅଧିକାର କରିଥିଲେ । ପଠାଣ-ସୈନ୍ୟମାନେ ମହାରାଷ୍ଟ୍ର ରାଜ୍ୟରୁ ତାଡ଼ିତ ହୋଇଥିଲେ । ତାଙ୍କ ପୁତ୍ର ମୁବାରକ ଗୁଜରାଟ ଓ ମହାରାଷ୍ଟ୍ର ଦେଶର ବିଦ୍ରୋହ ଦମନ କରିଥିଲେ, କିନ୍ତୁ ତାଙ୍କ ଉଜିର ଖସ୍ରୁ ତାହାଙ୍କୁ ହତ୍ୟା କରିବାରୁ ଏହି ବଂଶ ଲୋପ ପାଇଥିଲା ।

ତୋଗଲକ୍‌ବଂଶୀୟ ରାଜାମାନଙ୍କର ଶାସନ ୧୩୨୦-୧୪୧୨—ପଞ୍ଜା-ବର ଶାସନକର୍ତ୍ତା ଗିୟାସ୍‌ଉଦ୍ଦିନ ତୋଗଲକ୍ ଖସ୍ରୁଙ୍କୁ ହତ୍ୟା କରି ଦିଲ୍ଲୀର ସମ୍ରାଟ୍ ହେଲେ । ମହମ୍ମଦ ତୋଗଲକ୍ ଏହି ବଂଶର ପ୍ରସିଦ୍ଧ ସମ୍ରାଟ୍ ଥିଲେ । ଏହାଙ୍କ ଅମଳରୁ ପଠାଣରାଜ୍ୟର ପତନ ଆରମ୍ଭ ହେଲା । ସେ ଅତ୍ୟନ୍ତ ଅତ୍ୟାଚାରୀ ଓ ଆଡ଼ମ୍ବରପ୍ରିୟ ଲୋକ ଥିଲେ । ତାହାଙ୍କ ଅମଳରୁ ଏକ ଏକ ପ୍ରଦେଶ ବିଦ୍ରୋହୀ ହୋଇ ସ୍ୱାଧୀନ ହେବାକୁ ଲାଗିଲା । ପୂର୍ବ-

ବଙ୍ଗଳା ୧୩୩୮ ରେ ଏବଂ ପଶ୍ଚିମବଙ୍ଗଳା ୧୩୩୯ ରେ ସ୍ୱାଧୀନ ହେଲା । ଦାକ୍ଷିଣାତ୍ୟରେ କୃଷ୍ଣାନଦୀର ଦକ୍ଷିଣ ପାର୍ଶ୍ୱର ହିନ୍ଦୁରାଜ୍ୟମାନଙ୍କର ଧ୍ୱଂସାବଶେଷୋପରି ବିଜୟନଗର ନାମକ ଆଉ ଏକ ପରାକ୍ରମଶାଳୀ ହିନ୍ଦୁରାଜ୍ୟ ସ୍ଥାପିତ ହୋଇଥିଲା । ଏବଂ କୃଷ୍ଣାନଦୀର ଉତ୍ତରରେ ବାହ୍ମନୀରାଜ୍ୟ ନାମକ ଏକ ପଠାଣରାଜ୍ୟ ସ୍ଥାପିତ ହୋଇଥିଲା (୧୩୪୭) ।

ଏହାଙ୍କ ଅନ୍ତେ ଫିରୋଜତୋଗଲକ୍ ସମ୍ରାଟ୍ ହୋଇ ପତନଶୀଳ ସାମ୍ରାଜ୍ୟକୁ ରକ୍ଷା କରିବାଲାଗି ବିଶେଷ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ । ବଙ୍ଗଳା ଏବଂ ଦାକ୍ଷିଣାତ୍ୟ ସ୍ୱାଧୀନ ହେଲା । ବର୍ତ୍ତମାନ ପଠାଣ-ସାମ୍ରାଜ୍ୟ ଉତ୍ତର ଭାରତରେ ବଙ୍ଗଳାର ପଶ୍ଚିମାରୁ ପଞ୍ଜାବ ପର୍ଯ୍ୟନ୍ତ ବ୍ୟାପିଥିଲା ।

ମାମୁଦ ତୋଗଲକଙ୍କ ଅମଳରେ ପଠାଣସାମ୍ରାଜ୍ୟ ଗୋଟିଏ କ୍ଷୁଦ୍ର ରାଜ୍ୟରେ ପରିଣତ ହୋଇଥିଲା । କାନ୍ୟକୁବ୍ଜ, ଅଯୋଧ୍ୟା ଓ ଅନ୍ୟାନ୍ୟ ପୂର୍ବଦେଶୀୟ ପ୍ରଦେଶମାନଙ୍କର ଶାସନକର୍ତ୍ତା ବିଦ୍ରୋହୀ ହୋଇ ଜୋନ-ପୁରକୁ ରାଜଧାନୀ କରି ଆଉ ଏକ ନୂଆ ରାଜ୍ୟ ସ୍ଥାପନ କଲେ (୧୩୯୪) । ୧୩୯୬ ରେ ଗୁଜରାଟ, ୧୩୯୯ ରେ ଖାନ୍ଦେଶ, ୧୪୦୧ ରେ ମାଳବ ସ୍ୱାଧୀନ ହେଲା । ଏହାପରେ ଅଳ୍ପଦିନମଧ୍ୟରେ ପ୍ରକାଣ୍ଡ ପଠାଣସାମ୍ରାଜ୍ୟ ଗୋଟିଏ କ୍ଷୁଦ୍ର ରାଜ୍ୟରେ ପରିଣତ ହୋଇ ଦିଲ୍ଲୀ ଓ ତନ୍ନିକଟବର୍ତ୍ତୀ ସ୍ଥାନମାନଙ୍କରେ ଆବଦ୍ଧ ରହିଲା । ଏହି ସମୟରେ ତୈମୁର ନାମକ ଏକ ମୋଗଲ ଭାରତକୁ ଆସି ପଠାଣରାଜ୍ୟର ଆଉ ଯାହା କିଛି ବାକି ଥିଲା ତାହା ଧ୍ୱଂସ କରିଦେଇଥିଲେ (୧୩୯୮) । ତୈମୁରଙ୍କ ଯିବା-ପରେ ମାମୁଦ କେବଳ ନାମକୁ ମାତ୍ର ସମ୍ରାଟ୍ ହୋଇ ଦିଲ୍ଲୀସିଂହାସନରେ ବସିଥିଲେ ।

ଭାରତର ତତ୍କାଳୀନ ସ୍ୱାଧୀନ ରାଜ୍ୟସମୂହ—ପଠାଣସାମ୍ରାଜ୍ୟର ଧ୍ୱଂସ

ସମ୍ପୂର୍ଣ୍ଣ ହୋଇଥିଲା । ଦିଲ୍ଲୀଛଡ଼ା ଆଉ କୌଣସି ସ୍ଥାନ ସମ୍ରାଟଙ୍କ ଅଧୀନ ନ ଥିଲା । ଉତ୍ତର ଓ ଦକ୍ଷିଣ ଭାରତରେ ଛୋଟ ବଡ଼ ହିନ୍ଦୁ ଓ ମୁସଲମାନ ରାଜ୍ୟମାନ ସ୍ଥାପିତ ହୋଇଥିଲା । ଉତ୍ତର ଭାରତର କାଶ୍ମୀର, ସିନ୍ଧୁ, ମାଳବ, ଗୁଜରାଟ, ଜୌନପୁର, ବଙ୍ଗଳା ଓ ଅନ୍ୟାନ୍ୟ ପ୍ରଦେଶରେ ରାଜପୁତ-ମାନେ ରାଜତ୍ୱ କରୁଥିଲେ । ଦାକ୍ଷିଣାତ୍ୟରେ ବିଜୟନଗର ଓ ବାହ୍ମନି ନାମକ ଦୁଇଗୋଟି ପ୍ରସିଦ୍ଧ ରାଜ୍ୟ ସ୍ଥାପିତ ହୋଇଥିଲା । ବାହ୍ମନିରାଜ୍ୟ ହାସାନଙ୍କ ଦ୍ୱାରା ଏବଂ ବିଜୟନଗରରାଜ୍ୟ ବୁକ୍କାନାମକ ଏକ ବ୍ୟକ୍ତିଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ବାହ୍ମନିରାଜ୍ୟ ବିନ୍ଧ୍ୟପର୍ବତଠାରୁ କୃଷ୍ଣା ଏବଂ ତୁଙ୍ଗଭଦ୍ରା ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ନଦୀଦ୍ୱୟର ଦକ୍ଷିଣରୁ ବିଜୟନଗରରାଜ୍ୟ ବିସ୍ତୃତ ହୋଇଥିଲା ।

ଦାକ୍ଷିଣାତ୍ୟରେ ଏହାଛଡ଼ା ଖାନ୍ଦେଶ ନାମକ ଆଉ ଗୋଟିଏ ସ୍ୱାଧୀନ ରାଜ୍ୟ ବିଦ୍ୟମାନ ଥିଲା । ଗଙ୍ଗାବଂଶୀୟ ରାଜାମାନେ ଓଡ଼ିଶାରେ ସ୍ୱାଧୀନ-ଭାବରେ ରାଜପଣ କରୁଥିଲେ ଏବଂ ପରାକ୍ରମୀ ହୋଇ ବଙ୍ଗଳା ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ ।

ପଠାଣସାମ୍ରାଜ୍ୟ କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନ ରାଜ୍ୟରେ ବିଭକ୍ତ ହେବାରୁ ଫଳ ଏହି ହେଲା ଯେ, ସେମାନଙ୍କ ମଧ୍ୟରେ କଳହ ଆରମ୍ଭ ହୋଇଥିଲା ଏବଂ ଉତ୍ତର ଓ ଦକ୍ଷିଣ ଭାରତରେ ଘୋର ପରିବର୍ତ୍ତନ ଘଟିଥିଲା ।

ପଠାଣସାମ୍ରାଜ୍ୟର ପତନ ଏବଂ ସୈୟଦ ଓ ଲୋଦୀ-ବଂଶୀୟ ରାଜା-ମାନଙ୍କ ଶାସନ (୧୪୧୪-୧୫୨୬)—ମାମୁଦ ତୋଗଲକଙ୍କ ଅନ୍ତେ ଦୌଲତଖାଁଲୋଦୀ ନାମକ ଏକ ବ୍ୟକ୍ତି ଦିଲ୍ଲୀ ଅଧିକାର କଲେ । କିନ୍ତୁ ମୁଲତାନର ଶାସନକର୍ତ୍ତା ଖିଜରଖାଁ ତାଙ୍କୁ ତଡ଼ିଦେଇ ୧୪୧୪ ରେ ଦିଲ୍ଲୀ ଛଡ଼ାଇନେଲେ । ସେ ସୈୟଦବଂଶର ସ୍ଥାପନକର୍ତ୍ତା । ଏହି ବଂଶ

୧୪୫୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲା । ତତ୍ପରେ ବହ୍ଲୋଲ ଲୋଦୀ ଦିଲ୍ଲୀ ଅଧିକାର କଲେ । ସେ ୨୬ ବର୍ଷ ଯୁଦ୍ଧ କରି ଜୋନପୁର ରାଜ୍ୟ ନିଜ ରାଜ୍ୟର ସାମିଲ କରିଥିଲେ । ଏହାଙ୍କ ପୁତ୍ର ସିକନ୍ଦର ବିହାର ଜୟ କରିଥିଲେ । ସେ ଏହିରୂପେ ଉତ୍ତର ଭାରତରେ ସାମ୍ରାଜ୍ୟ ସ୍ଥାପନ କରିବାରେ କୟତ୍ ପରିମାଣରେ କୃତକାର୍ଯ୍ୟ ହୋଇଥିଲେ । ତାଙ୍କ ପରେ ଇବ୍ରାହିମ ଲୋଦୀ ସମ୍ରାଟ୍ ହେଲେ । ସେ ଅତ୍ୟନ୍ତ ଅତ୍ୟାଚାରୀ ଓ ଦୁର୍ବଳ ରାଜା ଥିଲେ । ଜୋନପୁର ସ୍ୱାଧୀନ ହେଲା । ପଞ୍ଜାବର ଶାସନକର୍ତ୍ତା ଦୌଲତ୍ଖାଁଲୋଦୀ କାବୁଲର ମୋଗଲ ସୁଲତାନ ବାବରଙ୍କୁ ଭାରତ ଆକ୍ରମଣ କରିବାକୁ ଡାକିଥିଲେ ।

ପାନିପଥ ଏବଂ ଶିକ୍ରି ଯୁଦ୍ଧ—ବାବର ଓ ଇବ୍ରାହିମ ଲୋଦୀଙ୍କ ମଧ୍ୟରେ ପାନିପଥଠାରେ ଏକ ଯୁଦ୍ଧ ହେଲା (୧୫୨୬) । ଇବ୍ରାହିମ ପରାଜିତ ଓ ହତ ହେଲେ । ମୋଗଲସାମ୍ରାଜ୍ୟର ପତ୍ତନ ଆରମ୍ଭ ହେଲା । ମିବାରର ରାଣା ସଂଗ୍ରାମସିଂହ ଏହି ଯୁଦ୍ଧରେ ବାବରଙ୍କୁ ସାହାଯ୍ୟ କରିଥିଲେ । ସେ ଯେତେବେଳେ ଦେଖିଲେ ଯେ, ବାବର ଆଉ ଦିଲ୍ଲୀ ପରିତ୍ୟାଗ କରି ଯାଉ ନାହାନ୍ତି ସେତେବେଳେ ସେ ବାବରଙ୍କୁ ତଡ଼ିଦେବା ସକାଶେ ଚେଷ୍ଟା କଲେ । ଶିକ୍ରିରେ ଯୁଦ୍ଧ ହେଲା (୧୫୨୭) । ସଂଗ୍ରାମସିଂହ ପରାଜିତ ଓ ନିହତ ହେଲେ । ବାବର ନିଶ୍ଚିନ୍ତ ହୋଇ ଦିଲ୍ଲୀର ସମ୍ରାଟ୍ ହେଲେ ।

ଦାକ୍ଷିଣାତ୍ୟରେ ପରିବର୍ତ୍ତନ—ଉତ୍ତରଭାରତରେ ଯେତେବେଳେ ଏହିପରି ପରିବର୍ତ୍ତନ ଘଟୁଥିଲା, ଦାକ୍ଷିଣାତ୍ୟରେ ମଧ୍ୟ ତଦ୍ରୂପ ଘଟିଥିଲା । ବାହମନିରାଜ୍ୟ ସର୍ବଦା ବିଜୟନଗରରାଜ୍ୟସହ ଯୁଦ୍ଧରେ ବ୍ୟାପୃତ ଥିଲା, ମାତ୍ର ଅବଶେଷରେ ଗୃହବିବାଦରେ ଧ୍ୱଂସପ୍ରାପ୍ତ ହେଲା ।

ଯେତେବେଳେ ବାବର ଭାରତ ଅକ୍ରମଣ କଲେ, ତେତେବେଳେ ବାହମନିରାଜ୍ୟ ଧ୍ୱଂସପ୍ରାପ୍ତ ହୋଇ ସେଥିରୁ ଅଉ ପାଞ୍ଚଗୋଟି ସ୍ୱାଧୀନ ରାଜ୍ୟ ଜାତ ହୋଇଥିଲା, ଯଥା—ଅଦିଲସାହଙ୍କ ଦ୍ୱାରା ସ୍ଥାପିତ ବିଜାପୁର ରାଜ୍ୟ, ଇମାଦସାହଙ୍କ ଦ୍ୱାରା ସ୍ଥାପିତ ବେହର ରାଜ୍ୟ, ଆହମ୍ମଦସାହଙ୍କ ଦ୍ୱାରା ସ୍ଥାପିତ ଆହମ୍ମଦନଗର ରାଜ୍ୟ, କୁତବଉଲ୍‌ମୁଲକ୍ ଦ୍ୱାରା ସ୍ଥାପିତ ଗୋଲକୁଣ୍ଡା ରାଜ୍ୟ, କାସିମ୍‌ବରିଦ୍ ଦ୍ୱାରା ସ୍ଥାପିତ ବଦର ରାଜ୍ୟ

---

## ୮ମ ଅଧ୍ୟାୟ ।

### ପଠାଣସାମ୍ରାଜ୍ୟର ଆରମ୍ଭଠାରୁ ମୋଗଲସାମ୍ରାଜ୍ୟସ୍ଥାପନ ପର୍ଯ୍ୟନ୍ତ ଭାରତର ସାମାଜିକ ଅବସ୍ଥା ।

ପଠାଣମାନେ ଭାରତ ଜୟ କରିବାରୁ ଭାରତରେ ହିନ୍ଦୁମାନଙ୍କର ଜାତୀୟ ଏବଂ ସାମାଜିକ ଜୀବନରେ ଘୋର ବିପ୍ଳବ ଘଟିଥିଲା । ମହମ୍ମଦ ଘୋରୀଙ୍କ ଭାରତବିଜୟପୂର୍ବେ ପଠାଣମାନେ ଭାରତକୁ ଆସି କେବଳ ଲୁଟପାଟ କରି ଚାଲିଯାଉଥିଲେ । କିନ୍ତୁ ତାହାଙ୍କ ବିଜୟପରେ ସେମାନେ ଭାରତରେ ବାସ କରି ଭାରତର ଲୋକ ହେଲେ ।

ପଠାଣ ରାଜାମାନଙ୍କର ନିଜ ଦେଶସଙ୍ଗେ କୌଣସି ପ୍ରକାର ସଂସ୍ରବ ନ ଥିଲା । ସେମାନଙ୍କୁ ଭାରତୀୟ ରାଜା ବୋଲି କୁହାଯାଇପାରେ । ଭାରତ ଜୟ କରି ପଠାଣମାନେ ହିନ୍ଦୁମାନଙ୍କୁ ନିଜ ଧର୍ମରେ ଦୀକ୍ଷିତ କରିବାକୁ ଆରମ୍ଭ କରିଥିଲେ ।

ଏ ଦେଶରେ ପଠାଣସାମ୍ରାଜ୍ୟ ସ୍ଥାପିତ ହେଲାଉତ୍ତାରୁ ହିନ୍ଦୁସମାଜ ଆଉ ମୁସଲମାନସମାଜ ପାଖେ ପାଖେ ରହିଲା ଏବଂ ପ୍ରତ୍ୟେକ ସମାଜ ଅନ୍ୟଉପରେ କ୍ଷମତା ବିସ୍ତାର କରିବାକୁ ଲାଗିଲା । ପଠାଣମାନଙ୍କ

ହାତରେ ରାଜଶକ୍ତି ଥିବାରୁ ସେମାନେ ହିନ୍ଦୁମାନଙ୍କୁ ନିଜ ଧର୍ମରେ ଦୀକ୍ଷିତ କରିବାଲାଗି ଚେଷ୍ଟା କଲେ । ଫଳ ଏହି ହେଲା ଯେ, ଉତ୍ତରପଶ୍ଚିମ ପ୍ରଦେଶ ଓ ବଙ୍ଗଳାର ଅନେକ ନୀଚଜାତୀୟ ଲୋକେ ମୁସଲମାନଧର୍ମ ଗ୍ରହଣ କଲେ, କିନ୍ତୁ ଅଧିକାଂଶ ହିନ୍ଦୁ ନିଜ ଧର୍ମ ତ୍ୟାଗ କରି ନ ଥିଲେ । କ୍ରମେ କ୍ରମେ ମୁସଲମାନମାନଙ୍କର ହିନ୍ଦୁମାନଙ୍କୁ ଧର୍ମରେ ଦୀକ୍ଷିତ କରିବାର ଜିଦ୍ କମିଗଲା, ଏବଂ ହିନ୍ଦୁ ଓ ମୁସଲମାନ ମିତ୍ରଭାବରେ ବାସ କରିବାକୁ ଆରମ୍ଭ କଲେ । ଯେତେବେଳେ ପଠାଣସାମ୍ରାଜ୍ୟ ଧ୍ୱଂସପ୍ରାପ୍ତ ହୋଇ ଅନେକ ସ୍ୱାଧୀନ ମୁସଲମାନରାଜ୍ୟ ସ୍ଥାପିତ ହୋଇଥିଲା ଏବଂ ମୁସଲମାନ ରାଜାମାନେ ହିନ୍ଦୁମାନଙ୍କ ଉପରେ ରାଜ୍ୟଶାସନଭାର ଦେଇଥିଲେ, ସେତେବେଳେ ହିନ୍ଦୁ ମୁସଲମାନ ମଧ୍ୟରେ ବିରୋଧୀ ଭାବ ଆଦୌ ନ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏକ ଅନ୍ୟର ଆଚାର, ବ୍ୟବହାର, ରୀତି, ନୀତି ଅନୁକରଣ କରିବାକୁ ଲାଗିଥିଲା ଏବଂ ସେମାନଙ୍କ ମଧ୍ୟରେ ବିବାହସମ୍ବନ୍ଧ ମଧ୍ୟ ସ୍ଥାପିତ ହୋଇଥିଲା ।

ସ୍ମୃତି ଓ ହିନ୍ଦୁ ସନ୍ନ୍ୟାସୀ—ଯେତେବେଳେ ବ୍ରାହ୍ମଣମାନେ ଦେଖିଲେ ଯେ ମୋଲ୍ଲା, ପୀର ଏବଂ ଫକୀରମାନେ ହିନ୍ଦୁମାନଙ୍କୁ ନବଧର୍ମରେ ଦୀକ୍ଷିତ କରିବାରେ ଲାଗିଅଛନ୍ତି କିନ୍ତୁ ଧର୍ମରକ୍ଷା କରିବାଲାଗି ହିନ୍ଦୁମାନଙ୍କର ରାଜା ନାହିଁ, ସେତେବେଳେ ସେମାନେ ହିନ୍ଦୁସମାଜ-ଚାଳନ ବିଷୟରେ କଠୋର ନିୟମମାନ ଲିପିବଦ୍ଧ କରି ଗ୍ରନ୍ଥସମୂହ ଲେଖିବାକୁ ବସିଲେ । ଏହି ଗ୍ରନ୍ଥମାନଙ୍କୁ ନବ୍ୟସ୍ମୃତି କୁହାଯାଏ । ମାଧବାଚାର୍ଯ୍ୟ ଏବଂ ରଘୁନନ୍ଦନ ଏହି ଶ୍ରେଣୀୟ ସ୍ମୃତି-ଲେଖକମାନଙ୍କ ମଧ୍ୟରେ ପ୍ରଧାନ ।

ପୂର୍ବେ ନୀଚଜାତୀୟ ହିନ୍ଦୁମାନେ ବ୍ରାହ୍ମଣମାନଙ୍କର ଧର୍ମଉପଦେଶ ପାଇପାରୁ ନ ଥିଲେ । ଏଣୁ ନୀଚଜାତୀୟ ହିନ୍ଦୁମାନଙ୍କ ମଧ୍ୟରୁ ଅନେକେ ମୁସଲମାନ ହୋଇଗଲେ । ଏହା ଦେଖି କେତେକଜଣ ସନ୍ନ୍ୟାସୀ

ସଂସ୍କାରକ ଜାତିଭେଦ ନ ମାନି ସମସ୍ତଙ୍କୁ ଉପଦେଶ ଦେବାକୁ ଆରମ୍ଭ କରି ନୂଆ ନୂଆ ଧର୍ମ ପ୍ରଚାର କରିଥିଲେ । ସେମାନଙ୍କ ମଧ୍ୟରେ ବିଖ୍ୟାତ କତିପୟ ଧର୍ମପ୍ରଚାରକମାନଙ୍କ ବିବରଣ ତଳେ ଦିଆଗଲା ।

ରାମାନନ୍ଦ—ସନ୍ନ୍ୟାସୀ ପ୍ରଚାରକମଧ୍ୟରେ ରାମାନନ୍ଦ ପ୍ରଥମ ଥିଲେ । ସେ ଉତ୍ତରଭାରତର ସମସ୍ତ ସ୍ଥାନରେ ଭ୍ରମଣ କରି ବୈଷ୍ଣବଧର୍ମ ପ୍ରଚାର କରିଥିଲେ । ସେ ନୀଚଜାତିପ୍ରତି ହିନ୍ଦୁମଧ୍ୟରୁ ଶିଷ୍ୟ ଗ୍ରହଣ କରିଥିଲେ ।

କବୀର—କବୀର ଜାତିରେ ତନ୍ତୀ ଥିଲେ । ସେ ରାମାନନ୍ଦଙ୍କ ଶିଷ୍ୟ । ସେ ପଞ୍ଚଦଶ ଶତାବ୍ଦୀରେ ଧର୍ମପ୍ରଚାର କରି ବୈଷ୍ଣବ-ଧର୍ମ-ନୀତିରେ ଏପରି ପରିବର୍ତ୍ତନ ଘଟାଇଥିଲେ ଯେ, କି ହିନ୍ଦୁ କି ମୁସଲମାନ ସମସ୍ତେ ଏହି ଧର୍ମ ଗ୍ରହଣ କରିପାରୁଥିଲେ । ସେ କହୁଥିଲେ ରାମ ଏବଂ ଅଲ୍ଲା ଏକ, କେବଳ ଭାଷା ଭିନ୍ନ । ତାହାଙ୍କ ମୃତ୍ୟୁପରେ ତାହାଙ୍କ ମୃତଶରୀରକୁ ହିନ୍ଦୁ ମୁସଲମାନ ଉଭୟ ଦାବି କରିଥିଲେ ।

ନାନକ—ପଞ୍ଚଦଶ ଶତାବ୍ଦୀର ଶେଷଭାଗରେ ନାନକ ପଞ୍ଜାବରେ ଧର୍ମପ୍ରଚାର କରିଥିଲେ । ତାହାଙ୍କ ପ୍ରଚାରିତ ଧର୍ମକୁ ଶିଖଧର୍ମ କୁହା-ଯାଏ । ସେ ହିନ୍ଦୁ ଓ ମୁସଲମାନ ଉଭୟଙ୍କୁ ନିଜଧର୍ମରେ ଦୀକ୍ଷିତ କରୁଥିଲେ ।

ଚୈତନ୍ୟ—ସେ ବ୍ରାହ୍ମଣକୁଳରେ ନବଦ୍ୱୀପରେ ୧୪୮୫ ରେ ଜନ୍ମ-ଗ୍ରହଣ କରି ବୈଷ୍ଣବଧର୍ମର ବିଶେଷ ଉନ୍ନତିସାଧନ କରିଥିଲେ । ସେ ମଧ୍ୟ ହିନ୍ଦୁ ଓ ମୁସଲମାନ ଉଭୟଙ୍କୁ ଧର୍ମଶିକ୍ଷା ଦେଉଥିଲେ । ତାହାଙ୍କ ଶିଷ୍ୟମାନଙ୍କ ମଧ୍ୟରେ ଜଣେ ମୁସଲମାନ ଥିଲେ । ସେ ପୁରୀ ନଗରରେ ପ୍ରାଣତ୍ୟାଗ କରିଥିଲେ ।

ପ୍ରାଦେଶିକ ଭାଷାମାନଙ୍କର ଉନ୍ନତି—ବୈଷ୍ଣବଧର୍ମର ଉତ୍ଥାନ ହେବାରୁ ପ୍ରାଦେଶିକ ଭାଷାମାନଙ୍କର ବିଶେଷ ଉନ୍ନତି ହୋଇଥିଲା । ବ୍ରାହ୍ମଣ-ମାନେ ସଂସ୍କୃତଭାଷାରେ ସୂତ୍ର ଲେଖୁଥିଲେ, କିନ୍ତୁ ସନ୍ନ୍ୟାସୀ ସଂସ୍କାରକମାନେ ପ୍ରାକୃତଭାଷାରେ ଗ୍ରନ୍ଥମାନ ଲେଖି ଲୋକମାନଙ୍କୁ ଶିକ୍ଷା ଦେଲେ । ରାମାନନ୍ଦ ଓ କବୀରଙ୍କ ଶିଷ୍ୟମାନେ ହିନ୍ଦିଭାଷାର, ଚୈତନ୍ୟଙ୍କ ଶିଷ୍ୟମାନେ ବଙ୍ଗଭାଷାର, ଆଉ ନାନକଙ୍କ ଶିଷ୍ୟମାନେ ପଞ୍ଜାବୀ ଭାଷାର ଉନ୍ନତି କରିଥିଲେ । ବୈଷ୍ଣବକବିମାନଙ୍କ ମଧ୍ୟରେ ବଙ୍ଗଳାରେ ବିଦ୍ୟାପତି ଓ ଚଣ୍ଡୀଦାସ ଏବଂ ଓଡ଼ିଶାରେ ଜଗନ୍ନାଥ ଦାସ ଓ ବଳରାମ ଦାସ ପ୍ରସିଦ୍ଧ ଥିଲେ । ଏହି ସମୟରେ ସାରଳା ଦାସ ନାମକ ଆଉ ଜଣେ କବି ଜନ୍ମଗ୍ରହଣ କରି ଓଡ଼ିୟାରେ ମହାଭାରତ ଲେଖିଥିଲେ । ସେ ଜଗନ୍ନାଥ ଦାସଙ୍କ ପୂର୍ବବର୍ତ୍ତୀ କବି ଏବଂ ତାହାଙ୍କୁ ଓଡ଼ିୟାଭାଷାର ଜନ୍ମ-ଦାତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ହିନ୍ଦୁଶାସନ ଓ ହିନ୍ଦୁକ୍ଷମତା—ମୁସଲମାନମାନେ ରାଜା ହେଲେ ସୁଦ୍ଧା ହିନ୍ଦୁରାଜତ୍ୱକାଳରେ ଦେଶର ଶାସନପ୍ରଣାଳୀ ଯେପରି ଥିଲା ବର୍ତ୍ତମାନ ମଧ୍ୟ ସେହିପରି ରହିଲା, ସାମାନ୍ୟମାତ୍ର ପରିବର୍ତ୍ତନ ଘଟିଥିଲା । ପଠାଣ ସମ୍ରାଟ୍‌ମାନେ ଦେଶକୁ ସୈନ୍ୟବଳଦ୍ୱାରା ଅଧୀନ ରଖିଥିଲେ । ଲୋକ-ମାନଙ୍କୁ ଦମନକରି ରଖିବାଲାଗି ସେମାନେ ବଡ଼ ବଡ଼ ସହରରେ ଏବଂ ଯେଉଁଠାରେ ହିନ୍ଦୁଶକ୍ତି ପ୍ରବଳ ଥିଲା ସେଠାରେ ସୈନ୍ୟ ରଖୁଥିଲେ । ଅବଶିଷ୍ଟ ଦେଶ ହିନ୍ଦୁମାନଙ୍କ ଶାସନରେ ଥିଲା । ଯେତେଦିନ ପର୍ଯ୍ୟନ୍ତ ଏହି ହିନ୍ଦୁ ଶାସନକର୍ତ୍ତାମାନେ ନିୟମିତରୂପେ ରାଜସ୍ୱ ଦାଖଲ କରୁଥିଲେ, ତେତେଦିନ ପର୍ଯ୍ୟନ୍ତ ସେମାନେ ନିଶ୍ଚିନ୍ତ ଭାବରେ ନିଜ ନିଜ ପ୍ରଦେଶ ଶାସନ କରୁଥିଲେ । କିନ୍ତୁ ଯେତେବେଳେ ସେମାନେ ରାଜସ୍ୱ ଦେଇପାରୁ ନ ଥିଲେ କିମ୍ବା ସମ୍ରାଟଙ୍କ ବଶ୍ୟତାସ୍ୱୀକାର କରୁ ନ ଥିଲେ, ତେବେ ତେ-

ବେଳେ ସମ୍ରାଟ୍‌ମାନେ ସୈନ୍ୟସହ ଆସି ସେମାନଙ୍କୁ ଦମନ କରୁଥିଲେ । ଯେତେବେଳେ ହିନ୍ଦୁ ଓ ମୁସଲମାନ ମଧ୍ୟରେ ମୈତ୍ରୀଭାବ ଜାତ ହେଲା, ତେତେବେଳେ ହିନ୍ଦୁମାନେ ଅଧିକ ପରିମାଣରେ ରାଜ୍ୟର ଉଚ୍ଚ ଉଚ୍ଚ ପଦରେ ନିଯୁକ୍ତ ହେଲେ । ବିଶେଷତଃ ରାଜସ୍ୱ-ଆଦାୟର ଭାର ହିନ୍ଦୁ-ମାନଙ୍କ ଉପରେ ନ୍ୟସ୍ତ ହେଲା ଏବଂ ପଠାଣରାଜାମାନଙ୍କର ଅଧିକାଂଶ ମନ୍ତ୍ରୀ ଓ ସେନାପତି ହିନ୍ଦୁ ହେଲେ ।

ପଠାଣସୈନ୍ୟ—ପଠାଣସୈନ୍ୟରେ ଭିନ୍ନ ଭିନ୍ନ ଜାତିର ଲୋକ ଥିଲେ । ଦାସବଂଶୀୟ ରାଜଗଣ ଅଫଗାନଜାତିରୁ ସୈନ୍ୟ ଗ୍ରହଣ କରୁଥିଲେ । ଖିଲ୍‌ଜିବଂଶୀୟ ରାଜଗଣଙ୍କ ସୈନ୍ୟରେ ତାତାର-ଦେଶୀୟ ଲୋକ, ମୁସଲମାନଧର୍ମ-ଦୀକ୍ଷିତ ମୋଗଲ ଓ ହିନ୍ଦୁ ଅଧିକ ପରିମାଣରେ ନିଯୁକ୍ତ ଥିଲେ । ପଠାଣରାଜାମାନଙ୍କ ଅମଳରେ ମଧ୍ୟ ଏସିୟାବାସୀ ଭିନ୍ନ ଭିନ୍ନ ଜାତିର ଲୋକମାନେ ଭାରତକୁ ଆସି ପଠାଣ-ସୈନ୍ୟରେ ପ୍ରବେଶଲାଭ କରିଥିଲେ । ଏମାନଙ୍କର ରାଜଭକ୍ତି ଅଦୌ ନ ଥିଲା । ଏମାନେ ନିଜ ସ୍ୱାର୍ଥ ପାଇଁ ଯେତେବେଳେ ଇଚ୍ଛା ତେତେ-ବେଳେ ବିଦ୍ରୋହୀ ହେଉଥିଲେ । ଏପରି ବିଭିନ୍ନ ଜାତୀୟ ଲୋକମାନଙ୍କ ଦ୍ୱାରା ଗଠିତ ସୈନ୍ୟକୁ କେବଳ ପରାକ୍ରମୀ ସମ୍ରାଟମାନେ ଦମନ କରିବାକୁ ସମର୍ଥ ହେଉଥିଲେ । ଦୁର୍ବଳ ସମ୍ରାଟ୍‌ମାନଙ୍କୁ ସେମାନେ ଆଦୌ ଗ୍ରାହ୍ୟ କରୁ ନ ଥିଲେ । ମହମ୍ମଦ ତୋଗଲକଙ୍କ ଦୁର୍ବଳତା ଜଣାପଡ଼ିବାରୁ ପଠାଣ-ସୈନ୍ୟର ନାୟକମାନେ ଉତ୍ପାତ ଆରମ୍ଭ କରି ପଠାଣସାମ୍ରାଜ୍ୟର ଧ୍ୱଂସସାଧନ କରିଥିଲେ । ଯେଉଁ ପଠାଣସୈନ୍ୟମାନେ ଏକ ସମୟରେ ସାମ୍ରାଜ୍ୟର ବଳ ଥିଲେ, ସେହିମାନେହିଁ ପରେ ତାହାର ଧ୍ୱଂସର କାରଣ ହୋଇଥିଲେ ।

ଇଉରୋପୀୟମାନଙ୍କର ଜଳପଥରେ ଭାରତାଗମନ—ପଠାଣ-

ରାଜତ୍ୱର ଶେଷ ଭାଗରେ ଇଉରୋପର ପର୍ତ୍ତୁଗାଲବାସୀ ପ୍ରସିଦ୍ଧ ନାବିକ ଭାସ୍କୋଡ଼ିଗାମା ଉତ୍ତମାଶାଅନ୍ତରୀପ ଆବିଷ୍କାର କରି ଜଳପଥରେ ଭାରତକୁ ଆସିବାର ମାର୍ଗ ଦେଖାଇଦେଇଥିଲେ (୧୪୯୮ ଖ୍ରୀ: ଅ:)। ଅଦ୍ୟାବଧି ସମୁଦ୍ରପଥରେ କୌଣସି ଇଉରୋପବାସୀ ଭାରତକୁ ଆସି ନ ଥିଲେ । ୧୫୧୦ ଖ୍ରୀ: ଅବ୍ଦରେ ଯେତେବେଳେ ପର୍ତ୍ତୁଗାଲବାସୀମାନେ ଜଳପଥରେ ଯୁଦ୍ଧଜାହାଜ ଯେନ ଆସି ଗୋଆ ନଗର ଆକ୍ରମଣ କରି ସ୍ୱାଧିକାରଭୁକ୍ତ କଲେ, ସେତେବେଳେ ଦେଖାଗଲା ଯେ, ଯେଉଁ ସମୁଦ୍ର ଆଜପର୍ଯ୍ୟନ୍ତ ଭାରତକୁ ବାହ୍ୟ ଶତ୍ରୁର ଆକ୍ରମଣରୁ ରକ୍ଷା କରିଆସୁଥିଲା, ତାହାହିଁ ସମୟେ ସମୟେ ନାନା ବିପଦ ଘଟାଇପାରେ ।

---

## ୯ମ ଅଧ୍ୟାୟ ।

### ମୋଗଲସାମ୍ରାଜ୍ୟ-ସ୍ଥାପନଠାରୁ ଇଂରେଜସାମ୍ରାଜ୍ୟ-ସ୍ଥାପନ ପର୍ଯ୍ୟନ୍ତ ଭାରତର ରାଜନୈତିକ ଅବସ୍ଥା ।

ପୂର୍ବେ କୁହାଯାଇଅଛି ଯେ, ବାବର ପଠାଣ ଓ ରାଜପୁତମାନଙ୍କୁ ପରାଜୟ କରି ମୋଗଲସାମ୍ରାଜ୍ୟର ପତ୍ତନ ଆରମ୍ଭ କରିଥିଲେ । କିନ୍ତୁ ଅଳ୍ପଦିନପରେ ତାଙ୍କର ମୃତ୍ୟୁ ହେବାରୁ ସେ ନବପ୍ରତିଷ୍ଠିତ ସାମ୍ରାଜ୍ୟକୁ ଦୃଢ଼ୀଭୂତ କରିପାରି ନ ଥିଲେ । ତାଙ୍କ ଅନ୍ତେ ତାଙ୍କ ପୁତ୍ର ହୁମାୟୁନ ସମ୍ରାଟ୍ ହେଲେ । ସେ ସମୟରେ ଗୁଜରାଟର ରାଜା ବାହାଦୁରସାହ ପରାକ୍ରମୀ ହୋଇ ମାଳବକୁ ନିଜରାଜ୍ୟର ସାମିଲ କଲେ । ଶେରଖାଁ ନାମକ ଏକ ପଠାଣ ସର୍ଦ୍ଦାର ପୂର୍ବପ୍ରଦେଶମାନଙ୍କରେ ପରାକ୍ରମୀ ହୋଇଥିଲେ । ହୁମାୟୁନ ବାହାଦୁରସାହଙ୍କୁ ପରାଜୟ କରି ଗୁଜରାଟ ଓ ମାଳବ ଦିଲ୍ଲୀସାମ୍ରାଜ୍ୟର ସାମିଲ କଲେ । ତହିଁପରେ ହୁମାୟୁନ ଶେରଖାଁଙ୍କୁ ଦମନ

କୟବାକୁଗି ଗମନ କଲେ । ଇତିମଧ୍ୟରେ ବାହାଦୁରସାହ ପୁନର୍ବାର ସ୍ୱାଧୀନ ହେଲେ । ହୁମାୟୁନ ଶେରଖାଁଙ୍କ ଦ୍ୱାରା କାନ୍ୟକୁବ୍ଜ ଯୁଦ୍ଧରେ ସମ୍ପୂର୍ଣ୍ଣ-ରୂପେ ପରାଜିତ ହୋଇ ଭାର-ତରୁ ପଳାଇଗଲେ (୧୫୪୦) । ମୋଗଲସାମ୍ରାଜ୍ୟ ଭାରତରୁ ଲୁପ୍ତ ହେଲା ।



ବାବର ।

ପଠାଣସାମ୍ରାଜ୍ୟ; ସୁରବଂଶୀୟ ରାଜଗଣଙ୍କ ଶାସନ:—ଶେରଖାଁ, ଶେରସାହ ଉପାଧି ଧାରଣ କରି ଦିଲ୍ଲୀର ସମ୍ରାଟ୍ ହେଲେ । ପୁନର୍ବାର ଭାରତରେ ପଠାଣସାମ୍ରାଜ୍ୟ ସ୍ଥାପିତ ହେଲା । ସେ ହୁମା-ୟୁନଙ୍କ ଭାଇ କାମରାନଙ୍କଠାରୁ ପଞ୍ଜାବପ୍ରଦେଶ ଛଡ଼ାଇନେଲେ । ଏହିରୂପେ ସେ ବଙ୍ଗଳା, ବିହାର, ଦିଲ୍ଲୀ ଏବଂ ପଞ୍ଜାବର ଅଧୀ-ଶ୍ୱର ହୋଇ ୧୫୪୨ ଖ୍ରୀଷ୍ଟାବ୍ଦରେ ଗୋଟିଏ ସାମ୍ରାଜ୍ୟ ସ୍ଥାପନ କଲେ ଏବଂ ମାଳବପ୍ରଦେଶକୁ ନିଜ ରାଜ୍ୟଭୁକ୍ତ କଲେ ।

ଶେରସାହଙ୍କ ଅନ୍ତେ ଗୃହବିବାଦ ଉପସ୍ଥିତ ହେଲା । ହିମୁ ନାମକ ସମ୍ରାଟଙ୍କର ଏକ ପ୍ରିୟପାତ୍ର ପରାକ୍ରମୀ ହୋଇ ନାନା ଅତ୍ୟାଚାର କଲେ । ଏହି ସୁବିଧା ପାଇ ହୁମାୟୁନ କାବୁଲରୁ ଆସି ସିକନ୍ଦର ସୁରଙ୍କୁ ସିରହିନ୍ଦ୍ ଯୁଦ୍ଧରେ ପରାସ୍ତ କରି ଦିଲ୍ଲୀ ଅଧିକାର କଲେ (୧୫୫୫) । କିନ୍ତୁ ଅଳ୍ପଦିନ ପରେ ହୁମାୟୁନଙ୍କ ମୃତ୍ୟୁ ହେଲା । ହିମୁ ପଠାଣସାମ୍ରାଜ୍ୟ

ରକ୍ଷା କରିବା ଲାଗି ଚେଷ୍ଟା କଲେ । କିନ୍ତୁ ସେ ହୁମାୟୁନଙ୍କ ପୁତ୍ର ଅକବରଙ୍କ କର୍ତ୍ତୃକ ପରାଜିତ ହେବାରୁ ପଠାଣସାମ୍ରାଜ୍ୟ ପୁନର୍ବାର ଲୋପ ପାଇଲା । ପାନିପଥଠାରେ ଯୁଦ୍ଧ ହୋଇଥିଲା (୧୫୫୬) ।

ମୋଗଲସାମ୍ରାଜ୍ୟ ଓ ଆକବର:—ଆକବର ଦିଲ୍ଲୀ ଅଧିକାର କରିବା ସମୟରେ ତାଙ୍କୁ ୧୪ ବର୍ଷ ମାତ୍ର ବୟସ ହୋଇଥିଲା । ନିଜ ପ୍ରାଧାନ୍ୟ ସ୍ଥାପନ କରିବା-ଲାଗି ତାଙ୍କୁ ବହୁଯୁଦ୍ଧ କରିବାକୁ ପଡ଼ିଥିଲା । ଚାରିବର୍ଷ ମଧ୍ୟରେ ସେ ଆଫଗାନମାନଙ୍କୁ ଜୋନପୁର ପର୍ଯ୍ୟନ୍ତ ତଡ଼ି ଦେଇଥିଲେ । ତତ୍ପରେ ଆକବର ନିଜ କର୍ମଚାରୀମାନଙ୍କ ଉପରେ କ୍ଷମତା ଦୃଢ଼ୀଭୂତ କରିବାକୁ ଲାଗିଲେ । ଏହା କରିବାକୁ ତାଙ୍କୁ ସାତବର୍ଷ ଲାଗିଥିଲା । ୨୫ ବର୍ଷ ବୟସ ସମୟରେ ସେ ରାଜ୍ୟମଧ୍ୟରେ ସମସ୍ତ ବିଦ୍ରୋହ ଓ ଉତ୍ପାତ ନିବାରଣ କରିଥିଲେ ।



ଅକବର ।

ତତ୍ପରେ ସେ ମୋଗଲସାମ୍ରାଜ୍ୟ ବଢ଼ାଇବା ଆଶାରେ କ୍ଷୁଦ୍ର ରାଜ୍ୟମାନଙ୍କୁ ନିଜ ରାଜ୍ୟସାମିଲ କରିବାର ଚେଷ୍ଟା କଲେ । ଏହା କରିବାଲାଗି ସେ ଯେପରି ବିକ୍ରମ ଦେଖାଇଥିଲେ, ସେହିପରି ମଧ୍ୟ ସାମ୍ୟନୀତି ପ୍ରୟୋଗ କରିଥିଲେ ।

ରାଜପୁତମାନଙ୍କ ବଶୀକରଣ—ଯେତେବେଳେ ଅକବର ଦେଖିଲେ ଯେ କେବଳ ବଳପ୍ରୟୋଗରେ ରାଜପୁତମାନେ ବଶୀଭୂତ ହେବେ ନାହିଁ, ସେତେବେଳେ ସେ ସେମାନଙ୍କ ପ୍ରତି ସାମ୍ୟନୀତି ପ୍ରୟୋଗ କରୁଥିଲେ । ମିତ୍ରତା ଓ ବିବାହସମ୍ବନ୍ଧର ସ୍ଥାପନଦ୍ୱାରା ସେ ରାଜପୁତମାନଙ୍କୁ ବଶ କରୁଥିଲେ । ଜୟପୁରର ରାଜା ବିହାରୀମଲ୍ଲଙ୍କ କନ୍ୟାଙ୍କୁ ଅକବର ନିଜେ ବିବାହ କଲେ ଏବଂ ତାଙ୍କର ଶ୍ୱଶୁରଙ୍କୁ ଓ ଶଳା ଭଗବାନ ଦାସଙ୍କୁ ଉଚ୍ଚ ରାଜକାର୍ଯ୍ୟ ଦେଲେ । ଅନ୍ୟାନ୍ୟ ରାଜପୁତ ସର୍ଦ୍ଦାରମାନେ ଅକବରଙ୍କ ଅଧୀନରେ ଚାକିରି କରିବାକୁ ଲାଗିଲେ ଏବଂ ଅଳ୍ପଦିନ ମଧ୍ୟରେ ରାଜ-ପୁତନାର ଅଧିକାଂଶ ଅକବରଙ୍କ ବଶରେ ଆସିଲା । କିନ୍ତୁ ମିବାରର ରାଜପୁତମାନେ ବଶ୍ୟତାସ୍ୱୀକାର କରି ନ ଥିଲେ । ଏଣୁ ଅକବର ୧୫୬୮ ଖ୍ରୀଷ୍ଟାବ୍ଦରେ ଚିତୋର ଆକ୍ରମଣ କରି ଅଧିକାର କଲେ । ଚିତୋରର ରାଜା ଉଦୟସିଂହ ଆରାବଳୀ ପର୍ବତକୁ ପଳାୟନ କଲେ । ଉଦୟସିଂହଙ୍କ ଅନ୍ତେ ତାଙ୍କ ପୁତ୍ର ପ୍ରତାପସିଂହ ମୋଗଲମାନଙ୍କ ବିରୁ-ଦ୍ଧରେ ବହୁକାଳ ପର୍ଯ୍ୟନ୍ତ ଯୁଦ୍ଧ କରି ପିତାଙ୍କ ରାଜ୍ୟର ଅଧିକାଂଶ ଜୟ କରି ନେଇଥିଲେ ।

ଉତ୍ତରଭାରତ-ବିଜୟ ଓ ସାମ୍ରାଜ୍ୟ-ଦୃଢ଼ୀକରଣ :—ଅକବର ୧୫୭୨ ଖ୍ରୀଷ୍ଟାବ୍ଦରେ ଗୁଜରାଟ, ୧୫୭୫ ରେ ଦାଉଦଙ୍କଠାରୁ ବଙ୍ଗଳା ଅଧିକାର କଲେ । ଅକବରଙ୍କ ଭାଇ ମିର୍ଜାହାକିମଙ୍କ ଅନ୍ତେ କାବୁଲ୍ ୧୫୮୫ ରେ ମୋଗଲସାମ୍ରାଜ୍ୟଭୁକ୍ତ ହେଲା । କିଛିକାଳପରେ ଅକବର କାଶ୍ମୀର ଅଧିକାର କରି ତାହାକୁ ନିଜ ରାଜ୍ୟସାମିଲ୍ କରିଥିଲେ । ୧୫୯୨ ରେ ସିନ୍ଧୁଦେଶ ଏବଂ ୧୫୯୪ ରେ କାନ୍ଦାହାର ମୋଗଲସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ଏହିରୂପେ ୪୦ ବର୍ଷ ମଧ୍ୟରେ ଅକବର ଉତ୍ତରଭାରତକୁ ଜୟକରି ତହିଁରେ ସାମ୍ରାଜ୍ୟକୁ ଦୃଢ଼ୀଭୂତ କରିଥିଲେ ।

ଅକବର ସମ୍ରାଟ୍ ହେବା ସମୟରେ ଦାକ୍ଷିଣାତ୍ୟ:—ପୂର୍ବେ କୁହାଯାଇଅଛି ଯେ ବାବରଙ୍କ ଭାରତ ଆକ୍ରମଣ ସମୟରେ ବାହ୍ମନିରାଜ୍ୟର ଧ୍ୱଂସରୁ ବିଜାପୁର, ଆହାମଦନଗର, ଗୋଲକୁଣ୍ଡା, ବିଦର ଏବଂ ବେରାର ଏହି ପାଞ୍ଚଗୋଟି ରାଜ୍ୟ ଉତ୍ପନ୍ନ ହୋଇଥିଲା । ଏମାନେ କେତେବେଳେ ପରସ୍ପର ମଧ୍ୟରେ ବିବାଦ କରୁଥିଲେ, କେତେବେଳେ ଅବା ସନ୍ଧି କରି ମିତ୍ରଭାବରେ ପରସ୍ପର ମଧ୍ୟରେ ଚଳୁଥିଲେ । ଏକ ସମୟରେ ଆହାମଦନଗର ବିଜୟନଗରର ହିନ୍ଦୁରାଜାଙ୍କ ସହି ମିଳିତ ହୋଇ ବିଜାପୁର ବିରୁଦ୍ଧରେ ଯୁଦ୍ଧ କରିଥିଲେ । ଅଉ ଏକ ସମୟରେ ବିଜାପୁର ସେହି ବିଜୟନଗରସହି ଯୋଗ ଦେଇ ଅହାମଦନଗରସହ ଯୁଦ୍ଧ କରିଥିଲେ । ୧୫୬୫ ରେ ସମସ୍ତ ମୁସଲମାନରାଜ୍ୟ ଏକତ୍ରିତ ହୋଇ ତାଲିକୋଟ ଯୁଦ୍ଧରେ ବିଜୟନଗରକୁ ଧ୍ୱଂସ କଲେ । ବିଜୟନଗରର ଧ୍ୱଂସପରେ ସେମାନେ ନିଜ ନିଜ ମଧ୍ୟରେ ବିବାଦ ଆରମ୍ଭ କଲେ । ବିଦର ପ୍ରଥମେ ବିଜାପୁର-ରାଜ୍ୟଭୁକ୍ତ ହେଲା, ତପରେ ବେରାର ଅହାମଦନଗରର ସାମିଲ ହେଲା । ଷୋଡ଼ଶ ଶତାବ୍ଦୀର ଶେଷଭାଗରେ ଆହାମଦନଗର, ବିଜାପୁର ଓ ଗୋଲକୁଣ୍ଡା ନାମକ ତିନଗୋଟି ରାଜ୍ୟ ସ୍ୱାଧୀନ ଥିଲା । ଏମାନଙ୍କୁ ଛାଡ଼ି ଖାନ୍ଦେଶ ମଧ୍ୟ ଆଉ ଗୋଟିଏ ସ୍ୱାଧୀନ ରାଜ୍ୟ ଥିଲା ।

ଆକବରଙ୍କ ଦାକ୍ଷିଣାତ୍ୟ-ବିଜୟ :—ଆକବର ଉତ୍ତରଭାରତରେ ସାମ୍ରାଜ୍ୟକୁ ଦୃଢ଼ୀଭୂତ କରି ଦାକ୍ଷିଣାତ୍ୟ ଜୟ କରିବାଲାଗି ମନ ବଳାଇଥିଲେ । ମାତ୍ର ଏଥିରେ ସେ ଅଧିକ କୃତକାର୍ଯ୍ୟ ହୋଇ ପାରି ନ ଥିଲେ । ଆହାମଦନଗରରେ ଗୃହବିବାଦ ଲାଗି ଦୁଇଦଳର ସୃଷ୍ଟି ହୋଇଥିଲା, ତନ୍ମଧ୍ୟରୁ ଏକଦଳ ଆକବରଙ୍କ ସାହାଯ୍ୟ ଲୋଡ଼ିଥିଲେ । ଆକବର ତାଙ୍କ ପୁତ୍ର ମୁରାଦଙ୍କୁ ସେଠାକୁ ପଠାଇଥିଲେ । ମୁରାଦ ଚାନ୍ଦ-ସୁଲ୍ତାନାଙ୍କ ଦ୍ୱାରା ପରାଜିତ ହେଲେ । ୧୫୯୯ ରେ ଆକବର ନିଜେ

ସୈନ୍ୟ ଘେନି ସେଠାକୁ ଯାଇଥିଲେ, ଏବଂ ଏହି ସମୟରେ ଚାନ୍ଦସୁଲତାନା ନିହତ ହୋଇଥିବାରୁ ଅହ୍ମାମଦନଗର ସହଜେ ଅଧିକୃତ ହେଲା । ମାତ୍ର ରାଜବଂଶୀୟ ଲୋକେ ବଶ୍ୟତା ସ୍ୱୀକାର ନ କରି କେତେକ କାଳପର୍ଯ୍ୟନ୍ତ ଏଠାରେ ସେଠାରେ ରାଜତ୍ୱ କରୁଥିଲେ । ତତ୍ପରେ ଆକବର ଖାନ୍ଦେଶକୁ ନିଜ ରାଜ୍ୟସାମିଲ କଲେ । ଏହା ଦେଖି ବିଜାପୁର ଓ ଗୋଲ୍‌କୁଣ୍ଡାର ରାଜାମାନେ ଆକବରଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରିଥିଲେ । ଏହିରୂପେ ଅକବର ଏକ ପ୍ରକାଣ୍ଡ ମୋଗଲ୍‌ସାମ୍ରାଜ୍ୟ ସ୍ଥାପନ କରି ତାହାକୁ ଦୃଢ଼ୀଭୂତ କରିବାପରେ ୧୬୦୫ ରେ ପ୍ରାଣତ୍ୟାଗ କଲେ ।

ଜାହାଙ୍ଗିର ଓ ସାହଜାହାନ; ୧୬୦୫-୧୬୫୮—ଉତ୍ତରଭାରତରେ କେବଳ ମିବାରରାଜ୍ୟ ଆକବରଙ୍କ ଅଧୀନତା ସ୍ୱୀକାର କରି ନ ଥିଲା । ଜାହାଙ୍ଗିର ସେଠାକୁ ଅନେକଥର ସୈନ୍ୟ ପଠାଇ ଅକୃତକାର୍ଯ୍ୟ ହୋଇଥିଲେ । ଅବଶେଷରେ ତାହାଙ୍କର ପୁତ୍ର ସାହଜାହାନ ୧୬୧୪ ରେ ତତ୍କାଳୀନ ରାଜା ଅମରସିଂହଙ୍କୁ ସନ୍ଧି କରିବାଲାଗି ବାଧ୍ୟ କରିଥିଲେ । ଅହ୍ମାମଦନଗର ବିଜିତ ହେଲେ ସୁଦ୍ଧା ଅକବରଙ୍କ ଅଧୀନତା ସ୍ୱୀକାର କରି ନ ଥିଲା । ମାଲିକ ଅମ୍ବର ଅହ୍ମାମଦନଗରକୁ ସ୍ୱାଧୀନ ରଖିବାଲାଗି ବିଶେଷ ଚେଷ୍ଟା କରୁଥିଲେ, କିନ୍ତୁ ସେ ସାହଜାହାନଙ୍କ ଦ୍ୱାରା ପରାଜିତ ହୋଇ ସନ୍ଧି କରିବାକୁ ବାଧ୍ୟ ହୋଇଥିଲେ (୧୬୨୧) ।

ସାହଜାହାନଙ୍କ ଅମଳରେ ଅହ୍ମାମଦନଗର ପୁନର୍ବାର ଯୁଦ୍ଧ କରି ପରାସ୍ତ ହେବାରୁ ୧୬୩୭ ରେ ମୋଗଲସାମ୍ରାଜ୍ୟ-ଭୁକ୍ତ ହେଲା । ବିଜାପୁର ଓ ଗୋଲକୁଣ୍ଡା ଏହି ଦୁଇ ରାଜ୍ୟ ସାହଜାହାନଙ୍କ କରଦ ରାଜ୍ୟ ହେଲା । ଏହାଙ୍କ ଅମଳରେ ମୋଗଲସାମ୍ରାଜ୍ୟ ଦାକ୍ଷିଣାତ୍ୟରେ ବିସ୍ତୃତି ଲଭିଥିଲା, କିନ୍ତୁ ପଶ୍ଚିମାଞ୍ଚଳରେ କାନ୍ଦାହାର ସାମ୍ରାଜ୍ୟଚ୍ୟୁତ ହୋଇ-

ଥିଲା । ପାରସ୍ୟବାସୀମାନେ ୧୬୪୮ ରେ କାନ୍ଦାହାରକୁ ଦଖଲ କରି ନେଇଥିଲେ ।

ଅରଙ୍ଗଜେବ :—ସାହଜାହାନ୍‌ଙ୍କ ଅନ୍ତେ ତାଙ୍କ ୪ର୍ଥ ପୁତ୍ର ଅରଙ୍ଗଜେବ କଳକୌଶଳରେ ଅନ୍ୟାନ୍ୟ ଭାଇମାନଙ୍କୁ ହତ୍ୟାକରି ସମ୍ରାଟ୍ ହେଲେ । ସେ ଅତ୍ୟନ୍ତ ଅତ୍ୟାଚାରୀ ଓ ହିନ୍ଦୁବିଦ୍ୱେଷୀ ଥିଲେ । ଏହାଙ୍କ ଅମଳରେ ମୋଗଲସାମ୍ରାଜ୍ୟ ଚରମ ସୀମାରେ ଉପସ୍ଥିତ ହୋଇଥିଲା ଏବଂ ଏହାଙ୍କ ସମୟରୁ ତାହାର ପତନ ଆରମ୍ଭ ହେଲା । ଏହାଙ୍କ ରାଜତ୍ୱର ଆରମ୍ଭକାଳରେ ଦାକ୍ଷିଣାତ୍ୟରେ ଆଉ ଗୋଟିଏ କ୍ଷମତାଶାଳୀ ଜାତିର ଉଦୟ ହୋଇଥିଲା । ଏହା ବିଖ୍ୟାତ ମରହଟ୍ଟା ଜାତି । ଏହାର ନେତା ଶିବାଜି ଥିଲେ । କପରି ଏହି ଜାତି ପରାକ୍ରମୀ ହୋଇଥିଲା, ତାହା ପରେ କୁହାଯିବ । ଶିବାଜି କ୍ରମଶଃ ପ୍ରତାପଶାଳୀ ହୋଇ ମୋଗଲମାନଙ୍କ ସଙ୍ଗେ ଯୁଦ୍ଧରେ ପ୍ରବୃତ୍ତ ହୋଇଥିଲେ । ଅରଙ୍ଗଜେବଙ୍କ ମୃତ୍ୟୁସମୟକୁ ଶିବାଜି ଦାକ୍ଷିଣାତ୍ୟର ଅଧିକାଂଶ ସ୍ଥାନରେ ନିଜ କ୍ଷମତା ବିସ୍ତାର କରିଥିଲେ ।

ରାଜପୁତ ବିଦ୍ରୋହ—ଅରଙ୍ଗଜେବ ନାନା କାରଣରୁ ହିନ୍ଦୁମାନଙ୍କର ବିଶେଷତଃ ରାଜପୁତମାନଙ୍କର ବିଦ୍ୱେଷଭାଜନ ହୋଇଥିଲେ । ଅବଶେଷରେ ସେ ହିନ୍ଦୁମାନଙ୍କ ଉପରେ ଜିଜିଆ କର ବସାଇବାରୁ ରାଜପୁତମାନେ ମିଳିତ ହୋଇ ବିଦ୍ରୋହୀ ହେଲେ । ମିବାରର ରାଣା ରାଜସିଂହ ଏମାନଙ୍କର ନେତା ହୋଇ ଜିଜିଆ କର ଦେବାକୁ ଅସ୍ୱୀକାର କରି ମୋଗଲମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଲାଗିଲେ । ଅବଶେଷରେ ଅରଙ୍ଗଜେବ ରାଜପୁତମାନଙ୍କ ସଙ୍ଗେ ସନ୍ଧି କରିଥିଲେ ।

ବିଜାପୁର ଓ ଗୋଲକୁଣ୍ଡାର ଅଧିକାର :—ନିଜ ପିତା ସାହଜାହା-

ନଙ୍କ ଅମଳରେ ଦାକ୍ଷିଣାତ୍ୟର ସୁବାଦାର ଥିଲାବେଳେ ଅରଙ୍ଗଜେବ ମୋଗଲସାମ୍ରାଜ୍ୟକୁ କୁମାରିକାଅନ୍ତରୀପ ପର୍ଯ୍ୟନ୍ତ ବିସ୍ତୃତ କରିବାଲାଗି ଚେଷ୍ଟା କରିଥିଲେ । ବର୍ତ୍ତମାନ ସମ୍ରାଟ୍ ହୋଇ ସେ ରାଜପୁତମାନଙ୍କ ସହ ସନ୍ଧି କରି ଦାକ୍ଷିଣାତ୍ୟ ଜୟ କରିବାଲାଗି ଯାତ୍ରା କଲେ । ମରହଟ୍ଟା-ସର୍ଦ୍ଦାର ଶମ୍ଭୁଜୀଙ୍କୁ ମୋଗଲରାଜ୍ୟଲୁଣ୍ଠନରେ ଗୋଲକୁଣ୍ଡାର ରାଜା ସହାୟତା କରିଥିବାରୁ ଅରଙ୍ଗଜେବ ତାହାଙ୍କ ବିରୁଦ୍ଧରେ ସୈନ୍ୟ ପଠାଇ ତାଙ୍କ ସଙ୍ଗେ ପ୍ରଥମେ ସନ୍ଧିସ୍ଥାପନ କଲେ । ତତ୍ପରେ ସେ ବିଜାପୁର ଆକ୍ରମଣ କରି ୧୬୮୬ ରେ ତାହାକୁ ମୋଗଲସାମ୍ରାଜ୍ୟ-ଭୁକ୍ତ କରିଥିଲେ । ତଦନନ୍ତର ସେ ଗୋଲକୁଣ୍ଡାରାଜାଙ୍କ ସନ୍ଧି ଭଗ୍ନ କରି ୧୬୮୮ ରେ ତାହାଙ୍କୁ ପରାସ୍ତ କଲେ ଏବଂ ତାହାଙ୍କ ରାଜ୍ୟକୁ ନିଜ ସାମ୍ରାଜ୍ୟଭୁକ୍ତ କଲେ ।

ଅରଙ୍ଗଜେବଙ୍କ ମରହଟ୍ଟାଦମନ :—ଗୋଲକୁଣ୍ଡା ଓ ବିଜାପୁରକୁ ସାମ୍ରାଜ୍ୟଭୁକ୍ତ କରି ଅରଙ୍ଗଜେବ ମରହଟ୍ଟାମାନଙ୍କୁ ଦମନ କରିବା ସକାଶ ଚେଷ୍ଟା କଲେ । ୧୬୮୯ ରେ ଅରଙ୍ଗଜେବ ଶିବାଜୀଙ୍କ ପୁତ୍ର ଶମ୍ଭୁଜୀଙ୍କୁ ଧରିନେଇ ବଧ କଲେ, ଏବଂ ଶମ୍ଭୁଜୀଙ୍କ ପୁତ୍ର ସାହୁଙ୍କୁ କାରାରୁଦ୍ଧ କରି ଅନେକ ମରହଟ୍ଟାଦୁର୍ଗ ଅଧିକାର କରିନେଲେ । କିନ୍ତୁ ମରହଟ୍ଟା-ମାନେ ପୁନର୍ବାର କ୍ଷମତାଶାଳୀ ହୋଇ ଏକ ଏକ କରି ସମସ୍ତ ଦୁର୍ଗ ଅଧିକାର କରିନେଲେ ଏବଂ ଅରଙ୍ଗଜେବ ବ୍ୟତିବ୍ୟସ୍ତ ହୋଇ ଆହ୍ମଦନଗରକୁ ଫେରିଆସି ସେହିଠାରେ ପଞ୍ଚତ୍ୱପ୍ରାପ୍ତ ହୋଇଥିଲେ (୧୭୦୭) ।

ରାଜପୁତ ଓ ଜାଠମାନଙ୍କର ବିଦ୍ରୋହ :—ଅରଙ୍ଗଜେବଙ୍କ ମୃତ୍ୟୁ-ପୂର୍ବେ ଉତ୍ତରଭାରତରେ ରାଜପୁତମାନେ ପୁନର୍ବାର ଅସ୍ତ୍ରଧାରଣ କରି-ଥିଲେ, ଏବଂ ଜାଠମାନେ ଭରତପୁରରେ ଏକ ରାଜ୍ୟ ସ୍ଥାପନ କରିଥିଲେ ।

ଶିଖଜାତି :—ଅରଙ୍ଗଜେବଙ୍କ ଅମଳରେ ପଞ୍ଜାବରେ ଆଉ ଏକ ନୂତନ ସାମରିକ ଜାତିର ଅଭ୍ୟୁଦୟ ହୋଇଥିଲା । ଏମାନଙ୍କୁ ଶିଖଜାତି ବୋଲାଯାଏ । ନାନକ ନାମକ ଏକ ବ୍ୟକ୍ତି ପଞ୍ଜାବରେ ଶିଖଧର୍ମ ପ୍ରଚାର କରିଥିଲେ । ଅନେକ ଲୋକ ଏହି ଧର୍ମ ଗ୍ରହଣ କରି ପ୍ରଥମେ ଶାନ୍ତ-ଭାବରେ ବାସ କରୁଥିଲେ । କିନ୍ତୁ ମୋଗଲ୍‌ମାନେ ଏମାନଙ୍କ ଉପରେ ଅତ୍ୟାଚାର କରିବାରୁ ଏମାନେ ଯୁଦ୍ଧବିଦ୍ୟା ଶିକ୍ଷା କଲେ । ଅରଙ୍ଗ-ଜେବଙ୍କ ମୃତ୍ୟୁସମୟକୁ ଏମାନେ ଏକ ଯୋଦ୍ଧାଜାତି ହୋଇଉଠିଥିଲେ ।

ଇଂରେଜମାନଙ୍କର ନିଜ ବସତିର ଦୃଢ଼ୀକରଣ :—ଅରଙ୍ଗଜେବଙ୍କ ମୃତ୍ୟୁର ପ୍ରାୟ ଏକଶତ ବର୍ଷ ପୂର୍ବରୁ ଇଂରେଜମାନେ ଏ ଦେଶକୁ ବାଣିଜ୍ୟ କରିବାକୁ ଆସି ପ୍ରଥମେ ଶାନ୍ତଭାବରେ ବାସ କରୁଥିଲେ । ମୋଗଲ ଓ ମରହଟ୍ଟାମାନେ ବର୍ତ୍ତମାନ ଏମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରି-ବାରୁ ଏମାନେ ନିଜ ବସତିକୁ ଦୃଢ଼ କରିବା ସକାଶ ଦୁର୍ଗନିର୍ମାଣ ଆରମ୍ଭ କଲେ । ଏଥିପୂର୍ବେ ଏମାନେ ମାନ୍ଦ୍ରାଜରେ ଏକ ଦୁର୍ଗ ନିର୍ମାଣ କରି-ଥିଲେ । ବର୍ତ୍ତମାନ ବମ୍ବେନଗର ଏମାନଙ୍କ ଅଧୀନରେ ଆସିବାରୁ ସେଠାରେ ମଧ୍ୟ ଏକ ଦୁର୍ଗ ନିର୍ମିତ ହେଲା (୧୬୬୮) । ୧୬୯୮ ରେ ଇଂରେଜମାନେ କଲିକତା କିଣି କରି ସେଠାରେ ମଧ୍ୟ ଦୁର୍ଗ ନିର୍ମାଣ କଲେ ।

ଅନ୍ୟାନ୍ୟ ମୋଗଲ୍‌ସମ୍ରାଟ୍‌ଗଣ :—ଅରଙ୍ଗଜେବ ଥାଉଁ ଥାଉଁ ପ୍ରକାଣ୍ଡ ମୋଗଲ୍‌ସାମ୍ରାଜ୍ୟର ପତନ ଆରମ୍ଭ ହୋଇଥିଲା । ତାଙ୍କ ଅନ୍ତେ ସିଂହାସନଲାଗି ବିବାଦ ଓ ଷଡ଼ଯନ୍ତ୍ର, ପ୍ରାଦେଶିକ ଶାସନକର୍ତ୍ତା ଓ ସେନା-ପତିମାନଙ୍କର ବିଦ୍ରୋହ, ବିଦେଶୀୟ ଆକ୍ରମଣ ଓ ହିନ୍ଦୁମାନଙ୍କର ଉତ୍ଥାନ ଆରମ୍ଭ ହେଲା । ୪୦ ବର୍ଷ ମଧ୍ୟରେ ମୋଗଲ୍‌ସାମ୍ରାଜ୍ୟ ସମ୍ପୂର୍ଣ୍ଣରୂପେ ଧ୍ୱଂସପ୍ରାପ୍ତ ହୋଇଥିଲା ।

ଅରଙ୍ଗଜେବଙ୍କ ଅନ୍ତେ ତାଙ୍କ ପୁତ୍ର ବାହାଦୁରସାହ ସମ୍ରାଟ୍ ହୋଇ ସମସ୍ତ ରାଜପୁତନାର ସ୍ୱାଧୀନତା ସ୍ୱୀକାର କଲେ । ଶିଖମାନେ ପଞ୍ଜାବର ପୂର୍ବଭାଗ ଲୁଟି କରିବାରୁ ବାହାଦୁରସାହ ସେମାନଙ୍କୁ ପାର୍ବତ୍ୟ ପ୍ରଦେଶକୁ ତଡ଼ିଦେଇଥିଲେ ।

ବାହାଦୁରସାହଙ୍କ ଅନ୍ତେ ସିଂହାସନଲାଗି ବିବାଦ ଲାଗିଲା । ପ୍ରଥମେ ବାହାଦୁରଙ୍କ ଜ୍ୟେଷ୍ଠ ପୁତ୍ର ଜାହାନ୍ଦରସାହ ସମ୍ରାଟ ହେଲେ । କିନ୍ତୁ କେତେକ ମାସ ଉତ୍ତାରେ ସୟଦହସନଅଲି ଓ ସୟଦଅବଦୁଲା ଦୁଇ ପଠାଣ ଭ୍ରାତା ଏହାଙ୍କୁ ହତ୍ୟା କରି ଏହାଙ୍କ ଭାଇ ଫରକ୍‌ସେୟାରଙ୍କୁ ସିଂହାସନରେ ବସାଇଲେ (୧୭୧୬) । ଏହି ସମୟରୁ ସୟଦ ଭ୍ରାତୃଦ୍ୱୟ ରାଜ୍ୟର ସର୍ବେସର୍ବା ହେଲେ । ଏମାନେ ଇଚ୍ଛାନୁସାରେ ସମ୍ରାଟ୍‌ମାନଙ୍କୁ ସିଂହାସନରେ ବସାଇ ତହିଁରୁ ତଡ଼ିଦେଇପାରୁଥିଲେ । ଏମାନେ ଅତ୍ୟାଗୃହୀ ଥିବାରୁ ପ୍ରାଦେଶିକ ଶାସନକର୍ତ୍ତାମାନେ ବିଦ୍ରୋହୀ ହେବାକୁ ଲାଗିଲେ ।

ନିଜାମଙ୍କର ରାଜ୍ୟ-ସ୍ଥାପନ :—୧୭୧୯ ରେ ସୟଦ ଭ୍ରାତୃଦ୍ୱୟ ବାହାଦୁରସାହଙ୍କ ନାତି ମହମ୍ମଦସାହଙ୍କୁ ସିଂହାସନରେ ବସାଇ ସାମ୍ରାଜ୍ୟ ଶାସନ କରିବାକୁ ଲାଗିଲେ । ନିଜାମଉଲ୍‌ମୁଲକ୍ ପ୍ରଥମେ ଦାକ୍ଷିଣାତ୍ୟର ସୁବାଦାର ଥିଲେ । ସୟଦ ଭ୍ରାତୃଦ୍ୱୟ ତାଙ୍କଠାରୁ ସୁବାଦାରୀ ଛଡ଼ାଇନେବାରୁ ସେ ବିଦ୍ରୋହୀ ହେଲେ ଏବଂ ମୋଗଲ ସୈନ୍ୟମାନଙ୍କୁ ପରାଜୟ କରି ଏକ ସ୍ୱାଧୀନ ରାଜ୍ୟ ସ୍ଥାପନ କଲେ । ହାଇଦ୍ରାବାଦର ନିଜାମମାନେ ଏହାଙ୍କର ବଂଶଧର, ଓ ଏମାନେ ଆଜି ପର୍ଯ୍ୟନ୍ତ ହାଇଦ୍ରାବାଦରେ ରାଜତ୍ୱ କରୁଅଛନ୍ତି ।

ମରହଟ୍ଟା ଜାତି :—ଅବଶେଷରେ ମହମ୍ମଦସାହ ସୟଦ ଭ୍ରାତୃଦ୍ୱୟଙ୍କୁ ମାରି ମୁକ୍ତି ଲଭିଥିଲେ । ଏଥିମଧ୍ୟରେ ମରହଟ୍ଟାମାନେ ଅତ୍ୟନ୍ତ

ପରାକ୍ରମୀ ହେବାରୁ ମୋଗଲସାମ୍ରାଜ୍ୟର ପତନ ଶୀଘ୍ର ଶୀଘ୍ର ଘଟିଲା । ମରହଟ୍ଟାରାଜ ସାହୁଙ୍କ ମନ୍ତ୍ରୀ ବା ପେଶବା ବାଲାଜିବିଶ୍ୱନାଥ ମହମ୍ମଦ-ସାହଙ୍କ ପାଖରୁ ସମସ୍ତ ଦାକ୍ଷିଣାତ୍ୟର ଚୌଥ ଓ ଶିରଦେଶମୁଖୀ ଆଦାୟ କରିବାର କ୍ଷମତା ପାଇଥିଲେ । ଦ୍ୱିତୀୟ ପେଶବା ବାଜିରାଓ ଦିଲ୍ଲୀସମ୍ରାଟଙ୍କ ଦୁର୍ବଳତା ଦେଖି ଦିଲ୍ଲୀ ଆକ୍ରମଣ କଲେ । ମହମ୍ମଦସାହ ବାଧ୍ୟ ହୋଇ ସନ୍ଧି କଲେ, ଏବଂ ନର୍ମଦା ଓ ଚମ୍ବଲ ନଦୀର ମଧ୍ୟବର୍ତ୍ତୀ ପ୍ରଦେଶ ଏବଂ ସମସ୍ତ ମାଲବ ମରହଟ୍ଟାମାନଙ୍କୁ ଦେଇଥିଲେ (୧୭୩୮) । ଏହି ମରହଟ୍ଟାମାନଙ୍କ ବିଷୟ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣିତ ହେବ ।

ନାଦୀରସାହଙ୍କ ଭାରତ-ଆକ୍ରମଣ :—୧୭୩୮ ରେ ପାରସ୍ୟର ରାଜା ନାଦୀରସାହ ଭାରତ ଆକ୍ରମଣ କରି ମୋଗଲସାମ୍ରାଜ୍ୟର ଅସ୍ତିତ୍ୱ ଏକାବେଳକେ ଲୋପ କରିଥିଲେ । ସେ ଦିଲ୍ଲୀ ଅଧିକାର କରି ସମସ୍ତ ଧନସମ୍ପତ୍ତି ଲୁଟିକରି ନେଇଯାଇଥିଲେ । କିନ୍ତୁ ଯିବାସମୟରେ ମହ-ମ୍ମଦସାହଙ୍କୁ ସିଂହାସନ ଦେଇଯାଇଥିଲେ । ସିନ୍ଧୁନଦୀର ପଶ୍ଚିମବର୍ତ୍ତୀ ପ୍ରଦେଶ ପାରସ୍ୟରାଜ୍ୟଭୁକ୍ତ ହୋଇଥିଲା ।

ହିନ୍ଦୁରାଜ୍ୟ :—ମୋଗଲସାମ୍ରାଜ୍ୟର ପତନରୁ ଅନେକ ହିନ୍ଦୁରାଜ୍ୟର ଉତ୍ପତ୍ତି ହେଲା । ଗୁର୍ଖାମାନେ ନେପାଳରେ ଏକ ରାଜ୍ୟ ସ୍ଥାପନ କଲେ । ଉତ୍ତରପଶ୍ଚିମରେ ଶିଖମାନେ ପରାକ୍ରମୀ ହୋଇ ପଞ୍ଜାବକୁ ଲୁଟି କରି-ବାକୁ ଲାଗିଲେ । ଭରତପୁରରେ ଜାଠମାନେ ସ୍ୱାଧୀନ ରାଜ୍ୟ ସ୍ଥାପନ କଲେ । ରାଜପୁତନାର ରାଜାମାନେ ସ୍ୱାଧୀନ ହେଲେ ।

ଦାକ୍ଷିଣାତ୍ୟରେ ମହୀସୁରରେ ଏକ ହିନ୍ଦୁରାଜ୍ୟ ସ୍ଥାପିତ ହେଲା । ସେତାରା ଓ କୋଲାପୁରରେ ଶିବାଜିଙ୍କ ବଂଶଧରମାନେ ରାଜତ୍ୱ କରୁ-ଥିଲେ । ମରହଟ୍ଟାମାନଙ୍କର କେତେଗୋଟି ଦଳ ଭିନ୍ନ ଭିନ୍ନ ସ୍ଥାନରେ ସ୍ୱାଧୀନ ରାଜ୍ୟ ସ୍ଥାପନ କରିଥିଲେ । ନାଗପୁରରେ ଭୋଁସଲା, ଗୋୟାଲି-

ଅରରେ ସିନ୍ଧିୟା, ଇନ୍ଦୋରରେ ହୋଲକାର ଏବଂ ବରୋଦାରେ ଗାଇକୋବାଡ଼ ସ୍ୱାଧୀନ ରାଜ୍ୟ ସ୍ଥାପନ କରିଥିଲେ । ପୁନାଠାରେ ପେଶବାମାନେ ଅତ୍ୟନ୍ତ ପରାକ୍ରମୀ ହୋଇଥିଲେ ।

ମୁସଲମାନରାଜ୍ୟ:—ଦାକ୍ଷିଣାତ୍ୟରେ ନିଜାମଉଲ୍‌ମୁଲକ୍ ହାଇଦ୍ରାବାଦକୁ ରାଜଧାନୀ କରି ଏକ ସ୍ୱାଧୀନ ରାଜ୍ୟ ସ୍ଥାପନ କରିଥିଲେ । କର୍ଣ୍ଣାଟରେ ଆର୍କଟର ନବାବ ନାମକୁମାତ୍ର ନିଜାମଙ୍କ ଅଧୀନରେ ଥିଲେହେଁ ସର୍ବଦା ସ୍ୱାଧୀନ ହେବାଲାଗି ଚେଷ୍ଟା କରୁଥିଲେ ।

ଉତ୍ତରଭାରତରେ ସିନ୍ଧୁନଦୀର ପଶ୍ଚିମ ପାର୍ଶ୍ୱ ପାରସ୍ୟ-ରାଜ୍ୟଭୁକ୍ତ ହୋଇଥିଲା । ଦିଲ୍ଲୀର ଉତ୍ତରରେ ରୋହିଲା ନାମକ ଏକ ଅଫଗାନ ଜାତି ପରାକ୍ରମୀ ହୋଇ ରୋହିଲଖଣ୍ଡ ନାମକ ଏକ ଆଫଗାନରାଜ୍ୟ ସ୍ଥାପନ କରିଥିଲେ । ଅଯୋଧ୍ୟାର ନବାବ ସାଦତ ଅଲିଖାଁ ସ୍ୱାଧୀନ ହୋଇ ବସିଥିଲେ । ଅଲିବର୍ଦ୍ଦିଖାଁ ବଙ୍ଗଳା, ବିହାର ଓ ଓଡ଼ିଶାରେ ସର୍ବେସର୍ବା ହୋଇ ସ୍ୱାଧୀନ ହୋଇଥିଲେ (୧୭୪୦) ।

ଇଉରୋପୀୟ ଜାତି—ଇଂରେଜ ଓ ଫରାସି:—ହିନ୍ଦୁ ଓ ମୁସଲମାନ ଛଡ଼ା ଏହି ସମୟରେ ଇଂରେଜ ଓ ଫରାସି ନାମକ ଦୁଇଗୋଟି ଇଉରୋପୀୟ ଜାତି କ୍ରମେ କ୍ରମେ କ୍ଷମତାଶାଳୀ ହେଉଥିଲେ । ଏହି ସମୟରେ ପର୍ତ୍ତୁଗିଜ୍, ଡଚ୍ ଓ ଦିନାମାରମାନଙ୍କର କ୍ଷମତା ଭାରତରୁ ସମ୍ପୂର୍ଣ୍ଣରୂପେ ହ୍ରାସ ପାଇଥିଲା । ଭାରତବାଣିଜ୍ୟ କେବଳ ଇଂରେଜ ଓ ଫରାସିମାନଙ୍କ ହସ୍ତରେ ଥିଲା । ପୂର୍ବେ କୁହାହୋଇଅଛି ଯେ ଇଂରେଜମାନେ ମାନ୍ଦ୍ରାଜ, ବମ୍ବେଇ ଓ କଲିକତାରେ ଦୁର୍ଗ ନିର୍ମାଣ କରିଥିଲେ । ଏମାନଙ୍କର ବାଣିଜ୍ୟ କ୍ରମଶଃ ଶ୍ରୀବୃଦ୍ଧି ଲଭିଥିଲା । ଫରାସିମାନଙ୍କର ମଧ୍ୟ ମାନ୍ଦ୍ରାଜ, ବମ୍ବେଇ ଓ ବଙ୍ଗଳାରେ ଉପନିବେଶମାନ ଥିଲା । ଦାକ୍ଷିଣାତ୍ୟରେ

ପଣ୍ଡିଚେରୀ ନଗର ଫରାସିସମାନଙ୍କର କେନ୍ଦ୍ରସ୍ଥଳୀ ଥିଲା ଏବଂ ସେଠାରେ ଜଣେ ଫରାସି ଗବର୍ଣ୍ଣର୍ ବାସ କରୁଥିଲେ ।

ଏହି ଇଉରୋପୀୟ ଜାତିମାନେ ଭାରତକୁ ଆସି କିପରି ବାଣିଜ୍ୟ ବିସ୍ତାର କରି ଦେଶ ଅଧିକାର କରିଥିଲେ ତାହା ପରେ ବର୍ଣ୍ଣିତ ହେବ ।

---

## ୧୦ମ ଅଧ୍ୟାୟ ।

### ମରହଟ୍ଟାମାନଙ୍କର ଅଭ୍ୟୁତ୍ଥାନ ଓ ପତନ ।

ଯେଉଁ ମରହଟ୍ଟାମାନଙ୍କର ଅଭ୍ୟୁଦୟ ହେବାରୁ ମୋଗଲସାମ୍ରାଜ୍ୟ ଅତ୍ୟନ୍ତ ଉତ୍ପୀଡ଼ିତ ହୋଇ ଶେଷରେ ଧ୍ୱଂସପ୍ରାପ୍ତ ହୋଇଥିଲା ସେହି-ମାନଙ୍କ ବିଷୟ ଏହି ଅଧ୍ୟାୟରେ ବର୍ଣ୍ଣିତ ହେବ ।

ମୁସଲମାନମାନେ ଭାରତ ଆକ୍ରମଣ କରିବାପୂର୍ବେ ଦାକ୍ଷିଣାତ୍ୟରେ ମହାରାଷ୍ଟ୍ରନାମରେ ଏକ ପ୍ରଦେଶ ଥିଲା । ସେ ପ୍ରଦେଶର ରାଜା ହିନ୍ଦୁ ଥିଲେ, ଏବଂ ସ୍ୱାଧୀନଭାବରେ ଏହି ପ୍ରଦେଶକୁ ଶାସନ କରୁଥିଲେ । ଏହି ପ୍ରଦେ-ଶର ଅଧିବାସୀମାନଙ୍କୁ ମରହଟ୍ଟା କହନ୍ତି ।

ଆଲ୍ଲାଉଦ୍ଦିନ ଖିଲିଜି ଏହି ପ୍ରଦେଶକୁ ଆକ୍ରମଣ କରି ରାଜାଙ୍କୁ ଦିଲ୍ଲୀର ଅଧୀନ କରିଥିଲେ । ମହମ୍ମଦତୋଗଲକଙ୍କ ସମୟରେ ଦାକ୍ଷିଣାତ୍ୟର ନାନା ସ୍ଥାନରେ ପଠାଣରାଜ୍ୟ ସ୍ଥାପିତ ହୋଇ ପରାକ୍ରାନ୍ତ ହେବାରୁ ମହାରାଷ୍ଟ୍ରରାଜ୍ୟର ଅସ୍ତିତ୍ୱ ପ୍ରାୟ ଲୁପ୍ତ ହୋଇଥିଲା । ସେହି ସମୟରୁ ମରହଟ୍ଟାସର୍ଦ୍ଦାରମାନେ କେତେବେଳେ ମୁସଲମାନରାଜାମାନଙ୍କ ନିକଟରେ ସୈନିକ କାର୍ଯ୍ୟ କରି, କେତେବେଳେ ଅବା କୃଷି ଓ ବାଣିଜ୍ୟାଦି ବ୍ୟବସାୟମାନ ଅବଲମ୍ବନ କରି ନିଜ ନିଜ ଜୀବିକା ନିର୍ବାହ କରୁଥିଲେ ।



ଶିବାଜି ।

ପ୍ରାୟ ୧୬୩୪ରେ ସାହଜଭୋଁସ୍ଲା ନାମକ ଏକ ମରହଟ୍ଟାସର୍ଦ୍ଦାର ବଶେଷ ଖ୍ୟାତ ଲଭିଥିଲେ । ସେ ଅହାମ୍ମଦନଗର ଓ ବଜାପୁର

ମୁସଲମାନରାଜାଙ୍କ ଅଧୀନରେ ରହି ମୋଗଲମାନଙ୍କ ସହିତ ଯୁଦ୍ଧ କରୁଥିଲେ । ଏଥିସକାଶ ସେ ଅନେକ ଜାଗୀର ପାଇଥିଲେ ଏବଂ ତାହାଙ୍କ ଅଧୀନରେ ଏକଦଳ ସୈନ୍ୟ ଥିଲା । ଶିବାଜି ଏହି ସାହଜିଙ୍କ ପୁତ୍ର । ସେ ୧୬୨୭ରେ ଜନ୍ମଗ୍ରହଣ କରିଥିଲେ । ଶିବାଜି ଦାକ୍ଷିଣାତ୍ୟର ଭିନ୍ନ ଭିନ୍ନ ହିନ୍ଦୁ ସମ୍ପ୍ରଦାୟରୁ ଲୋକ ନେଇ ଏକ ସୈନ୍ୟଦଳ ଗଠନ କରିଥିଲେ । ଏହି ସୈନ୍ୟମାନେ କେତେବେଳେ ମୁସଲମାନରାଜ୍ୟମାନଙ୍କ ବିରୁଦ୍ଧେ, କେତେବେଳେ ଅବା ସେମାନଙ୍କ ସଙ୍ଗେ ଯୋଗ ଦେଇ ଦିଲ୍ଲୀସମ୍ରାଟଙ୍କ ବିରୁଦ୍ଧେ ଅସ୍ତ୍ରଧାରଣ କରୁଥିଲେ । ସାହଜାହାନ ଓ ଅରଙ୍ଗଜେବଙ୍କ ଦାକ୍ଷିଣାତ୍ୟ ଆକ୍ରମଣ ସମୟରେ ଏମାନେ କ୍ରମଶଃ ଖ୍ୟାତି ଲଭିଥିଲେ । ଦାକ୍ଷିଣାତ୍ୟର ସ୍ୱାଧୀନ ମୁସଲମାନରାଜାମାନେ ଏମାନଙ୍କ ସାହାଯ୍ୟରେ ଦିଲ୍ଲୀସମ୍ରାଟଙ୍କୁ ବିଶେଷ ବାଧା ଦେଉଥିଲେ । ସମୟେ ସମୟେ ମୋଗଲ ସେନାପତିମାନେ ଏମାନଙ୍କ ସାହାଯ୍ୟରେ ଦାକ୍ଷିଣାତ୍ୟର ମୁସଲମାନ-ରାଜ୍ୟମାନ ବଶୀଭୂତ କରୁଥିଲେ ।

ଶିବାଜି, ୧୬୨୭-୧୬୮୦ :—ଶିବାଜି ନିଜ ସୈନ୍ୟଦଳ ବର୍ଦ୍ଧିତ କରି କଳକୌଶଳରେ ଦାକ୍ଷିଣାତ୍ୟରେ ମରହଟ୍ଟାମାନଙ୍କର କ୍ଷମତା ଦୃଢ଼ୀଭୂତ କରିଥିଲେ । ସେ ପଶ୍ଚିମଘାଟପର୍ବତସମୂହରେ ଦୁର୍ଗ ନିର୍ମାଣ କରି ବାସ କରୁଥିଲେ । ଦାକ୍ଷିଣାତ୍ୟର ହିନ୍ଦୁ କୃଷକମାନଙ୍କ ଦ୍ୱାରା ତାଙ୍କ ସୈନ୍ୟଦଳ ଗଠିତ ହୋଇଥିଲା । ସେମାନେ ବର୍ଚ୍ଛା ଧରି ସାନ ସାନ ଘୋଡ଼ାରେ ଚଢ଼ି ଯୁଦ୍ଧ କରୁଥିଲେ । ସେମାନେ ଏପରି ଭାବରେ ଶିକ୍ଷିତ ହୋଇଥିଲେ ଯେ, ସଙ୍କେତ ପାଇଲାମାତ୍ରେ କାହୁଁ ଆସି ଏକତ୍ରିତ ହୋଇଯାଉଥିଲେ, ଏବଂ ପୁଣି ସଙ୍କେତ ପାଇଲାମାତ୍ରେ କେଉଁଆଡ଼େ ପଳାଇଯାଇ ପାରୁଥିଲେ । କେବଳ ଫସଲକଟାସମୟ ଛାଡ଼ି ସେମାନେ ସବୁ ସମୟରେ ଯୁଦ୍ଧ କରି-ବାକୁ ପ୍ରସ୍ତୁତ ଥାନ୍ତି । ସେଥିଲାଗି ଶିବାଜିଙ୍କ ଅଧୀନରେ ଅନେକ ସୈନ୍ୟ

ଥିଲେହେଁ ସେମାନଙ୍କ ବ୍ୟୟନିର୍ବାହ ସକାଶ ଶିବାଜିଙ୍କ ହାତରୁ ପ୍ରାୟ କିଛି ବ୍ୟୟ ପଡୁ ନ ଥିଲା । ଏହିସବୁ ସୈନ୍ୟ ଘେନି ଶିବାଜି ଦାକ୍ଷିଣାତ୍ୟର ନାନାସ୍ଥାନ ଲୁଟି କରୁଥିଲେ କିମ୍ବା ଚୌଥ ଅଦାୟ କରୁଥିଲେ । ସେ ସୈନ୍ୟମାନଙ୍କୁ ଲୁଣ୍ଠିତ ଦ୍ରବ୍ୟର କେତେକାଂଶ ଦେଇ ଅବଶିଷ୍ଟ ନିଜେ ଘେନି ପାବର୍ତ୍ତୀୟ ଦୁର୍ଗକୁ ଚାଲିଯାଉଥିଲେ ।

୧୬୫୯ରେ ଶିବାଜି ବିଜାପୁରର ସେନାପତିଙ୍କୁ ମିତ୍ରଭାବରେ ଡାକି ତାଙ୍କୁ ହତ୍ୟା କରିଥିଲେ ଏବଂ ତାଙ୍କର ସୈନ୍ୟମାନଙ୍କୁ ମାରିପକାଇଥିଲେ । ୧୬୬୨ରେ ଶିବାଜି ବମ୍ବେଇ ପ୍ରଦେଶର ଉତ୍ତରପାଖ ପର୍ଯ୍ୟନ୍ତ ଲୁଟି କରି ସୁରାଟ ନଗର ଅଧିକାର କରିଥିଲେ । ୧୬୬୪ରେ ସେ ରାଜା ଉପାଧି ଧାରଣ କରି ନିଜ ନାମରେ ମୁଦ୍ରା ଚଳାଇଥିଲେ । ୧୬୬୫ରେ ଶିବାଜି ବିଜାପୁରରାଜାଙ୍କ ବିରୁଦ୍ଧେ ମୋଗଲମାନଙ୍କୁ ସାହାଯ୍ୟ ଦେଇ-ଥିଲେ । ୧୬୬୬ରେ ଅରଙ୍ଗଜେବ ଏହାଙ୍କୁ ଦିଲ୍ଲୀକୁ ଡକାଇ ନେଇ ବନ୍ଦୀ କଲେ, କିନ୍ତୁ ଶିବାଜି କଳେକୌଶଳେ ପଳାଇଅସି ମୋଗଲ-ମାନଙ୍କ ବିରୁଦ୍ଧେ ଅସ୍ତ୍ର ଧାରଣ କଲେ । ୧୬୭୪ରେ ଶିବାଜି ରାୟଗଡ଼-ଠାରେ ଅତ୍ୟନ୍ତ ଆଡ଼ମ୍ବରସହ ସିଂହାସନରେ ଅଭିଷିକ୍ତ ହୋଇଥିଲେ । ୧୬୮୦ ରେ ଏହି ବିଖ୍ୟାତ ମରହଟ୍ଟା ନରପତି ପ୍ରାଣତ୍ୟାଗ କରିଥିଲେ ।

ଶିବାଜିଙ୍କ ବଂଶ :—ଶିବାଜିଙ୍କ ଅନ୍ତେ ତାଙ୍କ ପୁତ୍ର ଶମ୍ଭୁଜି ରାଜା ହେଲେ ଏବଂ ୧୬୮୯ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମୋଗଲ ଓ ପର୍ତ୍ତୁଗିଜମାନଙ୍କ ସଙ୍ଗେ ଯୁଦ୍ଧ କରି ସେ ତାଙ୍କ ଜୀବନ କଟାଇଥିଲେ । ୧୬୮୯ରେ ଅରଙ୍ଗଜେବ ତାଙ୍କୁ ଧରିନେଇ ତାଙ୍କର ଆକ୍ଷି ଫୁଟାଇ-ଦେଲେ ଏବଂ ତହୁଁପରେ ଜିଭ କାଟି ମାରିପକାଇଲେ । ତହୁଁରେ ତାହାଙ୍କର ୬ ବର୍ଷର ପୁଅ ସାହୁ ଅରଙ୍ଗଜେବଙ୍କ ଦ୍ୱାରା ବନ୍ଦୀ ହୋଇ-

ଥିଲେ । ଅରଙ୍ଗଜେବଙ୍କ ମୃତ୍ୟୁପରେ ସାହୁ କାରାମୁକ୍ତ ହେଲେ ସତ୍ୟ, କିନ୍ତୁ ଅନେକ ଦିନ ମୋଗଲମାନଙ୍କ ଅଧୀନରେ ରହିଥିବାରୁ ତାଙ୍କର ରୀତି, ନୀତି ଅଧାମରହଟ୍ଟା ଓ ଅଧାମୋଗଲ ହୋଇଥିଲା । ସେ ରାଜ୍ୟଶାସନର ଭାର ଜଣେ ବ୍ରାହ୍ମଣମନ୍ତ୍ରୀ ବାଲାଜିବିଶ୍ୱନାଥ ଉପରେ ଅର୍ପଣ କରି ଘରେ ବସି କାଳଯାପନ କରୁଥିଲେ । ବାଲାଜିବିଶ୍ୱନାଥ ପେଶବା ଉପାଧି ଧାରଣ କରି ରାଜ୍ୟ ଶାସନ କରୁଥିଲେ । କ୍ରମେ ଏହି ପଦ ପୁରୁଷାନୁକ୍ରମିକ ହୋଇଥିଲା । ଅବଶେଷରେ ପେଶବାମାନଙ୍କର କ୍ଷମତା ମରହଟ୍ଟାରାଜାମାନଙ୍କଠାରୁ ବଳିପଡ଼ିଥିଲା । ଶିବାଜିଙ୍କ ବଂଶଧରମାନେ କେବଳ ସେତାରା ଓ କୋଲାପୁରଠାରେ ରାଜତ୍ୱ କରୁଥିଲେ ।

ପେଶବାବଂଶ—୧୭୧୮ ଖ୍ରୀ : ଅ : ରେ ପ୍ରଥମ ପେଶବା ବାଲାଜି-ବିଶ୍ୱନାଥ ତତ୍କାଳୀନ ଦିଲ୍ଲୀସମ୍ରାଟଙ୍କ ଉପରେ ପ୍ରଭୂତ କ୍ଷମତା ଲାଭକରି ଦାକ୍ଷିଣାତ୍ୟରୁ ଚୌଥ ଅର୍ଥାତ୍ ରାଜସ୍ୱର ଏକଚତୁର୍ଥାଂଶ ଆଦାୟ କରିବାର କ୍ଷମତା ପାଇଥିଲେ । ମରହଟ୍ଟାମାନେ ପୁନା ଓ ସେତାରାର ଚତୁର୍ଦ୍ଦିଗସ୍ଥ ସ୍ଥାନସମୂହ ଅଧିକାର କରିଥିଲେ । ଦ୍ୱିତୀୟ ପେଶବା ବାଜିରାଓ (୧୭୨୮-୪୦) ଦାକ୍ଷିଣାତ୍ୟରେ ନିଜ ରାଜ୍ୟ ବିସ୍ତାର କରିଥିଲେ । ୧୫ ବର୍ଷ ମଧ୍ୟରେ ସେ ଦିଲ୍ଲୀସମ୍ରାଟଙ୍କଠାରୁ ମାଲବ ଓ ନର୍ମଦାଠାରୁ ଚମ୍ବଲ ପର୍ଯ୍ୟନ୍ତ ସମସ୍ତ ସ୍ଥାନ ଛଡ଼ାଇନେଇଥିଲେ । ୧୭୩୯ ରେ ସେ ପର୍ତ୍ତୁ-ଗଜମାନଙ୍କଠାରୁ ବେସିନନଗର ବଳପୂର୍ବକ ନେଇଯାଇଥିଲେ ।

ତୃତୀୟ ପେଶବା ବାଲାଜିବାଜିରାଓ ୧୭୪୦-୧୭୬୧ :—ବାଲାଜି-ବାଜିରାଓ ମରହଟ୍ଟାମାନଙ୍କର କ୍ଷମତା ମୋଗଲସାମ୍ରାଜ୍ୟର କେନ୍ଦ୍ରସ୍ଥଳ ପର୍ଯ୍ୟନ୍ତ ବିସ୍ତାର କରିଥିଲେ । ଦାକ୍ଷିଣାତ୍ୟରେ ନିଜାମଙ୍କ ରାଜ୍ୟର କେତେକାଂଶ ଜୟକରି ସେ ନିଜ ରାଜ୍ୟ ବଢ଼ାଇଥିଲେ । ଏ ସମୟରେ ମରହଟ୍ଟାମାନଙ୍କର ଦୁଇଗୋଟି ପ୍ରଧାନ ଦଳ ଥିଲା—ଗୋଟିଏ ଦଳ ପୁନା-

ଠାରେ, ଆଉ ଗୋଟିଏ ଦଳ ନାଗପୁରଠାରେ । ନାଗପୁର ଦଳକୁ ଭୋଁସ୍‌ଲାଦଳ କୁହାଯାଉଥିଲା

ନାଗପୁରର ଭୋଁସ୍‌ଲାଦଳ—ଏହି ଦଳ ୧୭୪୧-୪୨ ରେ ବଙ୍ଗଳା ଆକ୍ରମଣ କରିଥିଲେ, କିନ୍ତୁ ସେ ସମୟର ବଙ୍ଗଳା-ଶାସନକର୍ତ୍ତା ଆଲି-ବର୍ଦ୍ଦିଖାଁଙ୍କ ଦ୍ୱାରା ପରାଜିତ ହୋଇଥିଲେ । ୧୭୪୩ ରେ ଭୋଁସ୍‌ଲାଦଳର ସର୍ଦ୍ଦାର ରଘୁଜି ଭୋଁସ୍‌ଲା ନିଜେ ବଙ୍ଗଳା ଆକ୍ରମଣ କରି ଲୁଟି କରିଥିଲେ । ୧୭୫୧ ରେ ଏହି ମରହଟ୍ଟାଦଳ ବଙ୍ଗଳାରୁ ଚୌଥ ଆଦାୟ କଲେ, ଓ ଓଡ଼ିଶାପ୍ରଦେଶ ଆଲିବର୍ଦ୍ଦିଖାଁଙ୍କଠାରୁ ପାଇଥିଲେ ।

ପୁନାର ମରହଟ୍ଟାଦଳ ପଞ୍ଜାବ ପର୍ଯ୍ୟନ୍ତ ଲୁଟିକରିବାକୁ ଆରମ୍ଭ କରିଥିଲେ । ପଞ୍ଜାବପ୍ରଦେଶ ସେ ସମୟରେ ଆଫଗାନସ୍ଥାନର ରାଜା ଆହମଦସାହଦୁରାଣିଙ୍କ ଅଧୀନରେ ଥିଲା । ସେ ରାଗାନ୍ୱିତ ହୋଇ ମର-ହଟ୍ଟାମାନଙ୍କୁ ଦମନ କରିବା ସକାଶ ଅଗ୍ରସର ହେଲେ । ୧୭୬୧ ରେ ପାନିପଥଠାରେ ଗୋଟିଏ ଘୋରଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧରେ ମରହଟ୍ଟାମାନଙ୍କର କ୍ଷମତା ଏକାବେଳକେ ଚୂର୍ଣ୍ଣୀଭୂତ ହୋଇଯାଇଥିଲା ।

ପଞ୍ଚ ମରହଟ୍ଟା ନେତୃ-ଦଳ :—୧୭୪୨ ରେ ପୁନା ଓ ନାଗପୁର ଦଳ-ଦ୍ୱୟ ମଧ୍ୟରେ ବଙ୍ଗଳାର ଲୁଣ୍ଠିତ ଦ୍ରବ୍ୟ ପାଇବାଲାଗି କଳହ ଆରମ୍ଭ ହୋଇଥିଲା । ୧୭୬୧ ପୂର୍ବରୁ ଅଉ ତିନିଗୋଟି ମରହଟ୍ଟାଦଳ ଅତ୍ୟନ୍ତ କ୍ଷମତାଶାଳୀ ହୋଇଥିଲେ । ୧୭୬୧ ରେ ପାଞ୍ଚଗୋଟି ଅତ୍ୟନ୍ତ କ୍ଷମତାଶାଳୀ ମରହଟ୍ଟାଦଳ ଗଠିତ ହୋଇଥିଲା । ପୁନାରେ ପେଶବା-ଦଳ, ନାଗପୁରରେ ଭୋଁସଲାଦଳ, ଗୋଅଲିଅରରେ ସିନ୍ଧିୟାଦଳ, ଇନ୍ଦୋରରେ ହୋଲକାରଦଳ, ଆଉ ବରୋଦାରେ ଗାଇକୋବାଡ଼-ଦଳ । ଏମାନଙ୍କ ମଧ୍ୟରେ ମନୋମାଳିନ୍ୟ ଜାତ ହୋଇଥିଲା । ଏହି

ସମୟରେ ଅହମଦସାହଦୁରାଣି ଆଫଗାନସ୍ଥାନରୁ ଆସି ମରହଟ୍ଟାମାନଙ୍କୁ ପରାସ୍ତ କରିଥିଲେ ।

ବାଲାଜିବାଜିରାଓଙ୍କ ଅନ୍ତେ ମଧୁରାଓ ୧୭୬୧ ରେ ପେଶବା ହେଲେ । ତାଙ୍କ ଅନ୍ତେ ତାଙ୍କ ସାନ ଭାଇ ନାରାୟଣରାଓ ୧୭୭୨ ରେ ପେଶବା ହୋଇଥିଲେ । କିନ୍ତୁ ଅଳ୍ପଦିନ ପରେ ସେ ନିହତ ହେଲେ ।

ମରହଟ୍ଟାମାନଙ୍କର ଅନ୍ୟାନ୍ୟ ବିବରଣ ଏଥିପରେ ଯଥାସ୍ଥାନରେ ଦିଆଯିବ ।

---

## ୧୧ଶ ଅଧ୍ୟାୟ ।

### ମୋଗଲସାମ୍ରାଜ୍ୟସ୍ଥାପନଠାରୁ ଇଂରେଜରାଜ୍ୟସ୍ଥାପନ ପର୍ଯ୍ୟନ୍ତ ଭାରତର ସାମାଜିକ ଅବସ୍ଥା ।

ବାବରଙ୍କ ସିଂହାସନ-ଅଧିରୋହଣଠାରୁ ଇଂରେଜମାନଙ୍କର ରାଜ୍ୟ-ସ୍ଥାପନ ପର୍ଯ୍ୟନ୍ତ ପ୍ରାୟ ସାର୍ଦ୍ଧଦୁଇଶତବର୍ଷ ଅତୀତ ହୋଇଥିଲା । ଏହି ସମୟ ମଧ୍ୟରେ ଭାରତର ରାଜନୈତିକ ଅବସ୍ଥାରେ ଯେପରି ଘୋର ପରିବର୍ତ୍ତନ ଘଟିଥିଲା, ସାମାଜିକ ଅବସ୍ଥାରେ ମଧ୍ୟ ସେହିପରି ଘୋର ବିପର୍ଯ୍ୟୟ ଘଟିଥିଲା । ମାତ୍ର ଆକବର ବାଦସାହଙ୍କ ସାମ୍ୟନୀତି ଓ ଉଦାର ଭାବ ହେତୁରୁ ଏହି ପରିବର୍ତ୍ତନକୁ ଲୋକେ ବୁଝିପାରି ନ ଥିଲେ । ଯେବେ ଆଉ ଜଣକେତେ ସମ୍ରାଟ୍ ଆକବରଙ୍କ ପରି ରାଜ୍ୟଶାସନ କରି-ଥାନ୍ତେ ତେବେ ହିନ୍ଦୁ ଓ ମୁସଲମାନ ଏହି ଦୁଇଜାତି ମିଳିଯାଇ ଏକ ଭାରତୀୟ ମହାଜାତିରେ ପରିଣତ ହୋଇପାରିବାର ଆଶା ଥିଲା । କିନ୍ତୁ ବିଧାତାଙ୍କର ବିଧାନ ଅନ୍ୟପ୍ରକାର । ଅରଙ୍ଗଜେବଙ୍କ ବୈଷମ୍ୟନୀତି ଏବଂ

ମାତଭାବ ଆକବରଙ୍କ ଏହି ମହତ୍ତ୍ୱ କାର୍ଯ୍ୟକୁ ସମ୍ପୂର୍ଣ୍ଣରୂପେ ଓଲଟାଇ ପକାଇଥିଲା । ତଦ୍ଦ୍ୱାରା ହିନ୍ଦୁ ଓ ମୁସଲମାନମାନଙ୍କର ପରସ୍ପର ପ୍ରତି ଘୃଣା ଓ ଶତ୍ରୁତା ଆରମ୍ଭ ହେଲା ଏବଂ ମିତ୍ରତା ଏକାବେଳକେ ଲୋପ ପାଇଲା ।

ଶାସନପ୍ରଣାଳୀ—ଆକବର ରାଜ୍ୟଶାସନ-ପ୍ରଣାଳୀରେ ବିଶେଷ ଉନ୍ନତି କରିଯାଇଥିଲେ । ପ୍ରତ୍ୟେକ ପ୍ରଦେଶ ଗୋଟିଏ ସୁବାଦାର କିମ୍ବା ନବାବଙ୍କ ଅଧୀନରେ ରହିଥିଲା । ଏହାଙ୍କ ଅଧୀନରେ ଅନେକ କର୍ମଚାରୀ ରହୁଥିଲେ; ଦେବାନ ଏମାନଙ୍କ ମଧ୍ୟରେ ପ୍ରଧାନ ଥିଲେ । ଦେବାନ ରାଜସ୍ୱ ଆଦାୟ କରୁଥିଲେ, ଏବଂ ରାଜସ୍ୱସମ୍ବନ୍ଧୀୟ ସମସ୍ତ ମକଦ୍ଦମା ନିଷ୍ପତ୍ତି କରୁଥିଲେ । ସୁବାଦାର ସୈନ୍ୟ ପରିଚାଳନ କରୁଥିଲେ ଏବଂ ଫୌଜଦାରୀ ମାମଲା ବୁଝୁଥିଲେ । ଯେତେଦିନ ପର୍ଯ୍ୟନ୍ତ ସୁବାଦାର ଓ ଦେବାନମାନେ ନିୟମିତରୂପେ ରାଜସ୍ୱ ଦାଖଲ କରୁଥିଲେ ଏବଂ ସମ୍ରାଟଙ୍କ ପ୍ରାଧାନ୍ୟ ସ୍ୱୀକାର କରୁଥିଲେ, ତେତେଦିନ ପର୍ଯ୍ୟନ୍ତ ସମ୍ରାଟ୍ ଏମାନଙ୍କୁ କିଛି କହୁ ନ ଥିଲେ; ଏବଂ ଏମାନେ ରାଜାପରି ଦେଶଶାସନ କରୁଥିଲେ । ସୁବାଦାରୀ ଓ ନବାବର ପଦ ପୁରୁଷାନୁକ୍ରମିକ ହୋଇଯାଇଥିଲା ।

ଜାୟଗିରଦାର ଓ ଜମିଦାର:—ଭାରତର ରାଜାମାନେ ଧର୍ମ ଓ ଦାତବ୍ୟ କାର୍ଯ୍ୟରେ ଜମି ଦାନ କରୁଥିଲେ । ଆଉମଧ୍ୟ ଗୁଣୀ କର୍ମଚାରୀମାନଙ୍କର ପ୍ରତିପୋଷଣ ନିମନ୍ତେ ଜମି ଛାଡ଼ିଦେଉଥିଲେ । ଏହି ପ୍ରଥା ଅତି ପୂର୍ବକାଳରୁ ଚଳିଆସୁଥିଲା । ମୁସଲମାନ ଶାସନ ସମୟରେ ଗୁଣୀ କର୍ମଚାରୀମାନଙ୍କୁ ଦିଆହୋଇଥିବା ଜମିକୁ ଜାୟଗିର କୁହାଯାଉଥିଲା । ଏହିସବୁ ଜାୟଗିର ପୁରୁଷାନୁକ୍ରମିକ ହୋଇଥିଲା । ଜାୟଗିରଦାରମାନେ ସେମାନଙ୍କର ଜାୟଗିରରୁ ରାଜାଙ୍କ ନ୍ୟାଯ୍ୟ ପ୍ରାପ୍ୟ ତାଙ୍କୁ ଦେଇ ଆଉ

ସମସ୍ତ ରାଜସ୍ୱ ଭୋଗ କରୁଥିଲେ । ମୁସଲମାନ ସମ୍ରାଟ୍‌ମାନେ ସେନାପତି-ମାନଙ୍କୁ ବେତନ ପରିବର୍ତ୍ତରେ ଜାୟଗିର ଦେଉଥିଲେ । ଏହାର ଫଳ ଏହାହିଁ ହୋଇଥିଲା ଯେ, ସମ୍ରାଟଙ୍କ ଖାସ ଜମି କ୍ରମଶଃ ହ୍ରାସ ଲଭିଥିଲା ଏବଂ ରାଜାଙ୍କ ହସ୍ତରୁ ରାଜସ୍ୱଆଦାୟକର୍ମ କ୍ରମେ କମିଯାଇଥିଲା । ଆକବର ଏହି ପ୍ରଥା ରହିତ କରି କର୍ମଚାରୀମାନଙ୍କୁ ବେତନ ଦେଉଥିଲେ । ମାତ୍ର ତାହାଙ୍କର ଉତ୍ତରାଧିକାରୀମାନେ ଏହି ପ୍ରଥା ଚଳାଇ ପାରି ନ ଥିଲେ ଏବଂ ଜାୟଗିରଦାରଙ୍କ ସଂଖ୍ୟା କ୍ରମଶଃ ବଢ଼ିଥିଲା ।

ଏହାଛଡ଼ା ଜମିଦାର ବୋଲି ଆଉ ଥୋକେ ଲୋକ ଥିଲେ । ଏମାନେ ପୁରୁଷାନୁକ୍ରମେ ପ୍ରଜାମାନଙ୍କଠାରୁ କର ଆଦାୟ କରି ସମ୍ରାଟଙ୍କୁ ଦେଉ-ଥିଲେ । ଯେଉଁ ରାଜାମାନେ ସମ୍ରାଟଙ୍କୁ କେବଳ କର ଦେଉଥିଲେ ସେମାନଙ୍କୁ ମଧ୍ୟ ମୁସଲମାନମାନେ ଜମିଦାର ବୋଲି ଡାକୁଥିଲେ ।

ଜାୟଗିରଦାର ଓ ଜମିଦାରମାନେ ନିଜ ଅଧିକୃତ ସ୍ଥାନମାନଙ୍କରେ ସମ୍ପୂର୍ଣ୍ଣ କ୍ଷମତା ଚଳାଉଥିଲେ । ସେମାନେ ଶାନ୍ତିରକ୍ଷା କରୁଥିଲେ ଏବଂ ମକଦ୍ଦମାମାନ ଶୁଣି ନିଷ୍ପତ୍ତି କରୁଥିଲେ । ସେମାନେ ନିଜମଧ୍ୟରେ ଯୁଦ୍ଧ କରୁଥିଲେ ଏବଂ ପରାକ୍ରାନ୍ତ ହେଲେ ଜଣେ ଅନ୍ୟଜଣଙ୍କର ସ୍ଥାନ ଅଧିକାର କରିପାରୁଥିଲା ।

ଐତିହାସିକ ସାହିତ୍ୟର ଉନ୍ନତି—ମୁସଲମାନମାନେ ଏ ଦେଶକୁ ଆସିଲାଦିନରୁ ଏ ଦେଶରେ ଇତିହାସ ଲେଖିବାର ରୀତି ଚଳିଲା । ଏ ପ୍ରଥା ହିନ୍ଦୁମାନଙ୍କ ମଧ୍ୟରେ ଆଦୌ ନ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମୁସଲମାନମାନେ ଅନେକ ଇତିହାସ ଲେଖିଯାଇଅଛନ୍ତି । ଆଉ କେତେକ ମୋଗଲସମ୍ରାଟ୍ ନିଜ ଶାସନର ବିବରଣ ମଧ୍ୟ ରଖି-ଯାଇଅଛନ୍ତି । ଫେରସ୍ତା, ଆବୁଲଫାଜଲ୍, ଖାଫିଖାଁ ପ୍ରଭୃତି ବିଖ୍ୟାତ

ଇତିହାସଲେଖକମାନେ ଏହି ସମୟର ଲୋକ । ଫେରସ୍ତା ଆକବରଙ୍କ ରାଜତ୍ୱ ପର୍ଯ୍ୟନ୍ତ ହିନ୍ଦୁସ୍ଥାନର ଇତିହାସ ଲେଖିଯାଇଅଛନ୍ତି । ଆବୁଲ୍-ଫାଜଲ୍ ତାଙ୍କର ଆକବରନାମା ଓ ଆଇନଆକବରୀରେ ଆକବରଙ୍କ ଜୀବନଚରିତ ଓ ତାଙ୍କ ଶାସନ ବିଷୟ ଲେଖିଅଛନ୍ତି । ଅରଙ୍ଗଜେବଙ୍କ ସମୟରେ ଖାଫିଖାଁ ସେ ସମୟର ଇତିହାସ ଲେଖିଅଛନ୍ତି । ମିର ଗୋଲାମ-ହୁସେନଖାଁ ତାଙ୍କ ସିୟାରଉଲ୍ ମୂତାକ୍ଷେରିନ୍ ନାମକ ଗ୍ରନ୍ଥରେ ମୋଗଲ-ସାମ୍ରାଜ୍ୟର ପତନଠାରୁ ଇଂରେଜରାଜ୍ୟସ୍ଥାପନ ପର୍ଯ୍ୟନ୍ତ ଇତିହାସ ଲେଖିଯାଇଅଛନ୍ତି ।

ପ୍ରାଦେଶିକ ଭାଷାର ଉନ୍ନତି :—ପୂର୍ବେ କୁହାଯାଇଅଛି ଯେ, ୧୫ଶ ଏବଂ ୧୬ଶ ଶତାବ୍ଦୀରେ କେତେକ ଧର୍ମବୀର ଜନ୍ମଗ୍ରହଣ କରି କଥିତ ଭାଷାର ଉନ୍ନତି କରିଥିଲେ । ମୋଗଲରାଜତ୍ୱ ସମୟରେ ପ୍ରାଦେଶିକ ଭାଷାମାନଙ୍କର ଆହୁରି ଉନ୍ନତି ହୋଇଥିଲା । ଏ ସମୟରେ କୃତ୍ତିବାସ, ମୁକୁନ୍ଦରାମ, କାଶିଦାସ ଏବଂ ଭାରତଚନ୍ଦ୍ର ପ୍ରଭୃତି କବିମାନେ କବିତାମାନ ଲେଖି ବଙ୍ଗଭାଷାର ବିଶେଷ ଉନ୍ନତି କରିଥିଲେ । ଏମାନଙ୍କପରି ତୁକାରାମ ମହାରାଷ୍ଟ୍ରୀୟ ଭାଷାର ଏବଂ ତୁଲସୀଦାସ ହିନ୍ଦୀଭାଷାର ଉନ୍ନତି କରି-ଥିଲେ । ଦୀନକୃଷ୍ଣଦାସ, ବଳରାମଦାସ ଏବଂ ଉପେନ୍ଦ୍ରଭଞ୍ଜ ପ୍ରଭୃତି କବିମାନେ ଏହି ସମୟର ଲୋକ । ସେମାନଙ୍କ ଲିଖିତ କବିତାମାନଙ୍କ ଦ୍ୱାରା ଓଡ଼ିଆ ଭାଷାର ବିଶେଷ ଉନ୍ନତି ସାଧିତ ହୋଇଥିଲା ।

ମୁସଲମାନ ଶିଳ୍ପ—ମୁସଲମାନମାନେ ନିଜ ଶିଳ୍ପବିଦ୍ୟା ଏ ଦେଶରେ ପ୍ରଚଳନ କରିଥିଲେ । ସାହଜାହାନଙ୍କ ନିର୍ମିତ ତାଜମହଲ, ଜୁମାମସଜିଦ୍, ଦେୱାନ ଖାସ, ଜଗତ୍‌ବିଖ୍ୟାତ ଅଟେ । ସଙ୍ଗୀତବିଦ୍ୟାର ମଧ୍ୟ ଏ ସମ-ୟରେ ଉନ୍ନତି ହୋଇଥିଲା ।

## ୧୬ଶ ଅଧ୍ୟାୟ ।

### ଭାରତରେ ଇଉରୋପୀୟମାନଙ୍କର ପ୍ରଥମ ସମାଗମ— ଉତ୍ତମାଶାଅନ୍ତରୀପର ଆବିଷ୍କାର ।

ଆଲେକଜାଣ୍ଡରର ଭାରତକୁ ଆସିବାଦନୁ ଭାରତର ବିବରଣ ଇଉରୋପରେ କ୍ରମଶଃ ପ୍ରଚାରିତ ହେଉଥିଲା । ସେହି ଦିନଠାରୁ ପର୍ତ୍ତୁ-ଗିଜ ନାବିକ ଭାସ୍କୋଡ଼ିଗାମାଙ୍କ ଆଗମନ ପର୍ଯ୍ୟନ୍ତ ଇଉରୋପର ଅଧିବାସୀମାନେ ଆସିଆର ପୂର୍ବଦେଶମାନଙ୍କ ସଙ୍ଗେ ପ୍ରତ୍ୟକ୍ଷ ଭାବରେ



ଭାସ୍କୋଡ଼ିଗାମା ଓ ଜାମୋରନ୍ ।

ବାଣିଜ୍ୟ କରି ପାରୁ ନ ଥିଲେ । ଆରବୀୟମାନେ ଅତ୍ୟନ୍ତ କ୍ଷମତାଶାଳୀ ଥିବାରୁ କେବଳ ସେହିମାନେହିଁ ଜଳପଥରେ ଭାରତବର୍ଷ ଓ ତାହାର

ନିକଟବର୍ତ୍ତୀ ଦ୍ୱୀପସମୂହରେ ବାଣିଜ୍ୟ କରୁଥିଲେ । ଏମାନେ ଭାରତ ଓ ତନ୍ନିକଟବର୍ତ୍ତୀ ଦ୍ୱୀପସମୂହରୁ ଶାଲ, ରେଶମୀ ଲୁଗା, ମସଲା, ସୁନା ଓ ରୂପାର ଅଳଙ୍କାର ଓ ହାତୀଦାନ୍ତର କାରୁକାର୍ଯ୍ୟ ପ୍ରଭୃତି ନେଇ ଅଧିକ ମୂଲ୍ୟରେ ଇଟାଲିର ଜେନୋଆ ଏବଂ ଭେନିସ୍‌ବାସୀମାନଙ୍କୁ ବିକ୍ରୟ କରୁଥିଲେ । ଶେଷୋକ୍ତ ସ୍ଥାନର ଅଧିବାସୀମାନେ ଏହି ଦ୍ରବ୍ୟସବୁ ଅତ୍ୟଧିକ ମୂଲ୍ୟରେ ଫ୍ରାନ୍ସ, ସ୍ପେନ, ଇଂଲଣ୍ଡ ପ୍ରଭୃତି ସ୍ଥାନରେ ବିକ୍ରୟ କରୁଥିଲେ । ଆରବୀୟମାନଙ୍କର ଏହି ଏକାଧିପତ୍ୟ ବାଣିଜ୍ୟ ଉଠାଇଦେବାଲାଗି ଇଉରୋପର ପଶ୍ଚିମାଞ୍ଚଳବାସୀମାନେ ଦୃଢ଼ପ୍ରତିଜ୍ଞ ହୋଇଥିଲେ । କିନ୍ତୁ ଭୂମଧ୍ୟସାଗର ଏବଂ ଲୋହିତସାଗର ବ୍ୟତୀତ ଆଉ କୌଣସି ବାଟ-ଦେଇ ଭାରତକୁ ଆସିବାର ଉପାୟ ନ ଥିଲା । ଭୂମଧ୍ୟସାଗରରେ ଇଟାଲିର ଜେନୋଆବାସୀମାନେ ଅତ୍ୟନ୍ତ ପ୍ରବଳ ଥିଲେ ଏବଂ ଲୋହିତସାଗର ଆରବୀୟମାନଙ୍କର ଅଧୀନ ଥିବାରୁ ଇଉରୋପୀୟମାନେ ଅନ୍ୟବାଟ-ଦେଇ ଭାରତକୁ ଆସିବାଲାଗି ଚେଷ୍ଟା କରୁଥିଲେ ।

ଇଉରୋପବାସୀମାନେ ଉତ୍ତରପଶ୍ଚିମ ସମୁଦ୍ରବାଟଦେଇ ଭାରତକୁ ଜଳପଥରେ ଆସିବାଲାଗି ଅନେକ ଥର ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଥିଲେ । ୧୫ଶ ଶତାବ୍ଦୀରେ ଇଉରୋପର ସ୍ପେନରାଜ୍ୟ ଜଳ-ପଥରେ ଜାହାଜ ଚଳାଇବା ବିଷୟରେ ଅତ୍ୟନ୍ତ ପରାକ୍ରମଶାଳୀ ଥିଲା । ୧୪୯୨ ଖ୍ରୀ: ଅବ୍ଦରେ ସ୍ପେନର ରାଜା କଲମ୍ବସ୍‌ଙ୍କୁ ପଶ୍ଚିମ ସାଗରଦେଇ ଭାରତକୁ ଆସିବାଲାଗି ପଠାଇଥିଲେ ; କିନ୍ତୁ ସେ ଭାରତକୁ ନ ପାଇ ଆମେରିକା ନାମକ ଏକ ମହାଦେଶ ଆବିଷ୍କାର କଲେ । ଏହାର ୬ ବର୍ଷପରେ ୧୪୯୮ ଅବ୍ଦରେ ପର୍ତ୍ତୁଗାଲବାସୀ ଭାସ୍କୋଡ଼ିଗାମା ନାମକ ଏକ ବ୍ୟକ୍ତି ପୂର୍ବ ବାଟେ ଭାରତକୁ ଆସିବାଲାଗି ଲିସ୍‌ବନରୁ ବାହାରି କୃତକାର୍ଯ୍ୟ ହୋଇଥିଲେ । ସେ ସମୁଦ୍ରପଥରେ ଅଫ୍ରିକାର ଦକ୍ଷିଣସ୍ଥିତ

ଅନ୍ତରୀପକୁ ବେଷ୍ଟନ କରି ୧୪୯୮ ମଇମାସର ୨୦ ତାରିଖରେ ଭାରତର ପଶ୍ଚିମ ଉପକୂଳରେ ଥିବା କାଲିକଟ ନଗରରେ ପହୁଞ୍ଚିଥିଲେ । ଭାରତକୁ ଆସିବାର ଆଶା ପୂର୍ଣ୍ଣ ହେବାରୁ ଆଫ୍ରିକାର ଦକ୍ଷିଣବର୍ତ୍ତୀ ଅନ୍ତରୀପର ନାମ ଉତ୍ତମାଶାଅନ୍ତରୀପ ଦିଆଯାଇଥିଲା । ଭାରତକୁ ଆସିବାଲାଗି ଭାସ୍କୋଡ଼ିଗାମାଙ୍କୁ ପ୍ରାୟ ୧୧ ମାସ ଲାଗିଥିଲା । ଏହାଙ୍କର ଭାରତପ୍ରବେଶକୁ ଇଉରୋପୀୟମାନଙ୍କର ଭାରତରେ ପ୍ରଥମ ସମାଗମ କୁହାଯାଏ । ଏହି ବ୍ୟକ୍ତି ଉତ୍ତମାଶାଅନ୍ତରୀପର ଆବିଷ୍କାରକ । ଏପର୍ଯ୍ୟନ୍ତ ଇଉରୋପବାସୀମାନେ ଉତ୍ତମାଶାଅନ୍ତରୀପବାଟେ ଭାରତକୁ ବାଟ ଥିବାର ଜାଣି ନ ଥିଲେ । ଏହି ଅନ୍ତରୀପ ଆବିଷ୍କାର କରିବାଦ୍ଦ୍ଵାରୁ ଇଉରୋପୀୟ ଜାତିମାନଙ୍କ ମଧ୍ୟରୁ ପର୍ତ୍ତୁଗିଜମାନେହିଁ କେବଳ ୧୦୦ ବର୍ଷ ପର୍ଯ୍ୟନ୍ତ ଭାରତସଙ୍ଗେ ପ୍ରତ୍ୟକ୍ଷଭାବରେ ବାଣିଜ୍ୟ କରୁଥିଲେ ।

ଓଲନ୍ଦାଜମାନଙ୍କ ଆଗମନ:—ଇଉରୋପର ହଲାଣ୍ଡଦେଶବାସୀମାନଙ୍କୁ ଓଲନ୍ଦାଜ କହନ୍ତି । ସର୍ବପ୍ରଥମେ ଏମାନେ ପର୍ତ୍ତୁଗିଜମାନଙ୍କ ଏକାଧିପତ୍ୟ ବାଣିଜ୍ୟ ଧ୍ଵଂସ କରିବାଲାଗି କୃତସଂକଳ୍ପ ହୋଇଥିଲେ । ଏମାନେ ପ୍ରଥମେ ଇଉରୋପ ଓ ଏସିୟାର ଉତ୍ତର ବାଟଦେଇ ଭାରତକୁ ଆସିବାଲାଗି ଚେଷ୍ଟା କରିଥିଲେ । ଏହି ଦେଶର ଉଇଲିୟମ୍ ବାରନେଟସ୍ ନାମକ ଏକ ବ୍ୟକ୍ତି ଏହି ବାଟେ ଆସିବାଲାଗି ତିନିଥର ଚେଷ୍ଟା କରି ଶେଷଥର ମୃତ୍ୟୁମୁଖରେ ପଡ଼ିଥିଲେ । ୧୫୯୬ ଖ୍ରୀ: ଅବ୍ଦରେ ସେହି ଦେଶର କରନେଲିୟସ୍ ହୁଟମାନ୍ ନାମକ ଏକ ବ୍ୟକ୍ତି ଉତ୍ତମାଶା ବେଷ୍ଟନ କରି ସୁମାତ୍ରା ଏବଂ ଜାଭାଦ୍ଵୀପରେ ପହୁଞ୍ଚିଥିଲେ । ତତ୍ପରେ ପୂର୍ବଦେଶ ବା ଏସିଆ ମହାଦେଶ ଓ ଦ୍ଵୀପମାନଙ୍କ ସଙ୍ଗେ ବାଣିଜ୍ୟ କରିବାଲାଗି ହଲାଣ୍ଡରେ କେତେଗୁଡ଼ିଏ ବଣିକଦଳ ବା କମ୍ପାନି

ସ୍ଥାପିତ ହୋଇଥିଲା । ୧୬୦୨ ରେ ଓଲନ୍ଦାଜ ଗବର୍ଣ୍ଣମେଣ୍ଟ ଏମାନଙ୍କୁ ଏକତ୍ରିତ କରି "ଓଲନ୍ଦାଜ ଇଷ୍ଟ ଇଣ୍ଡିଆ କମ୍ପାନି" ନାମ ଦେଇଥିଲେ । ୧୬୧୯ ରେ ଏମାନେ ଜାଭାଦ୍ୱୀପରେ ବାଟେଭିଯ଼ା ନାମକ ଏକ ନଗର ସ୍ଥାପନ କରି ତାହାକୁ ପୂର୍ବଦେଶରେ ସେମାନଙ୍କ ଅଧିକୃତ ସ୍ଥାନସମୂହର ରାଜଧାନୀ କରିଥିଲେ ।

ସପ୍ତଦଶ ଶତାବ୍ଦୀରେ ଓଲନ୍ଦାଜମାନେ ପୃଥିବୀରେ ସାମୁଦ୍ରିକ କ୍ଷମତାରେ ସର୍ବଶ୍ରେଷ୍ଠ ହୋଇଥିଲେ । ୧୬୨୩ ରେ ସେମାନେ ଆମ୍ବୋଯ଼ିନା ନାମକ ଦ୍ୱୀପରେ ଇଂରେଜମାନଙ୍କୁ ନିର୍ଦ୍ଦୟଭାବରେ ହତ୍ୟା କରିଥିଲେ । ସେମାନେ ମଧ୍ୟ କ୍ରମେ କ୍ରମେ ପର୍ତ୍ତୁଗିଜମାନଙ୍କୁ ଭାରତୀୟ ଦ୍ୱୀପପୁଞ୍ଜରୁ ତଡ଼ିଦେଇଥିଲେ । ୧୬୩୫ରେ ଏମାନେ ଫରମୋଜା ଏବଂ ୧୬୪୦ରେ ମଲକ୍କା ଦ୍ୱୀପପୁଞ୍ଜ ଅଧିକାର କଲେ ।

ଇଂରେଜଅଗମନ :—ଇଂଲଣ୍ଡର ଅଧିବାସୀମାନଙ୍କୁ ଇଂରେଜ ବୋଲାଯାଏ । ସେମାନେ ମଧ୍ୟ ପ୍ରଥମେ ଉତ୍ତରପଶ୍ଚିମ ବାଟଦେଇ ଉତ୍ତର ମହାସମୁଦ୍ର ପାରହୋଇ ଭାରତକୁ ଆସିବାଲାଗି ଚେଷ୍ଟା କରିଥିଲେ । ୧୪୯୬ରେ ସପ୍ତମ ହେନେରି ଜନ୍ କାବଟ୍ ଓ ତାଙ୍କର ତିନ ପୁତ୍ରଙ୍କୁ ୬ଗୋଟି ଜାହାଜ ଦେଇ ଭାରତକୁ ଆସିବାଲାଗି ଉତ୍ତରପଶ୍ଚିମ ବାଟ ଆବିଷ୍କାର କରିବା ସକାଶେ ପଠାଇଥିଲେ । ସେମାନେ ତହିଁରେ ଅକୃତକାର୍ଯ୍ୟ ହୋଇ ଅମେରିକାର ନିଉଫାଉଣ୍ଡଲାଣ୍ଡଦ୍ୱୀପ ଆବିଷ୍କାର କରିଥିଲେ । ୧୫୫୩ ରେ ସର୍ ହିଉ ଉଇଲୋବି ଉତ୍ତରପୂର୍ବ ବାଟଦେଇ ଉତ୍ତର ମହାସମୁଦ୍ର ପାରହୋଇ ଭାରତକୁ ଆସିବାର ଚେଷ୍ଟା କରି ମୃତ୍ୟୁମୁଖରେ ପଡ଼ିଥିଲେ । ତତ୍ପରେ ୧୫୭୬ ଠାରୁ ୧୬୧୬ ପର୍ଯ୍ୟନ୍ତ ଫ୍ରବିଶର୍, ଡେଭିସ୍, ହଡ଼୍‌ସନ୍ ଏବଂ ବେଫିନ୍ ନାମକ ବ୍ୟକ୍ତିମାନେ ଉତ୍ତର-ପଶ୍ଚିମ ବାଟ ଆବିଷ୍କାର କରିବାଲାଗି ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇ-

ଥିଲେ । ହଲାଣ୍ଡବାସୀ କରନେଲିୟସ୍ ହୁଟମାନ୍ ୧୫୯୬ରେ ଉତ୍ତମାଶା-ଅନ୍ତରୀପ ବେଷ୍ଟନ କରି ଭାରତ-ଆଗମନର ପଥ ଆବିଷ୍କାର କରିବାରୁ ଇଂଲଣ୍ଡରେ "ଇଷ୍ଟ ଇଣ୍ଡିଆ କମ୍ପାନି" ନାମକ ଏକ କମ୍ପାନି ଗଠିତ ହେଲା । ଏହା କପରି ଗଠିତ ହେଲା ପରେ କୁହାଯିବ । ଭାରତ ଓ ଭାରତୀୟ ଦ୍ୱୀପପୁଞ୍ଜରେ ପ୍ରତ୍ୟକ୍ଷଭାବରେ ବାଣିଜ୍ୟ କରିବା ଏହି କମ୍ପାନିର ଉଦ୍ଦେଶ୍ୟ ଥିଲା । କପ୍ତାନ୍ ଲାନ୍‌କାଷ୍ଟର ଏହି ଦଳର ନେତା ହୋଇ ଏଚିନର ରାଜାଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରି ଜାଭାଦ୍ୱୀପର ବାନ୍‌ଟାମ୍ ନଗରରେ ଏକ ବାଣିଜ୍ୟାଳୟ ବସାଇଲେ । ପରବର୍ଷ ଏମାନେ ସୁମାତ୍ରା, ମଲକ୍କାସ୍, ବାନ୍ଦା, ଆମ୍ବୋୟ୍‌ନା ଓ ବାନ୍‌ଟାମ୍‌ରୁ ଜାହାଜରେ ମରିଚ ଓ ମସଲା ନେଇଥିଲେ । ଭାରତରେ ପ୍ରବେଶ କରିବାଲାଗି ପର୍ତ୍ତୁଗିଜମାନେ ଇଂରେଜମାନଙ୍କୁ ବିଶେଷ ବାଧା ଦେଇଥିଲେ । ୧୬୧୧ ରେ ସର୍ ହେନେରି ମିଡ଼ିଲ୍‌ଟନ୍ ନାମକ ଏକ ଇଂରେଜ, ପର୍ତ୍ତୁଗିଜମାନେ ବାଧା ଦେଲେ ସୁଦ୍ଧା, ଏକ ଜାହାଜ ମାଲ କାମ୍ବେଉପକୂଳରୁ ଘେନିଯାଇଥିଲେ । ୧୬୧୫ ରେ ତାପ୍ତିନଦୀ-ମୁହାଣର ନିକଟବର୍ତ୍ତୀ ସ୍ୱାଲି ନାମକ ସ୍ଥାନରେ ଏକ ଜଳଯୁଦ୍ଧ ହୋଇଥିଲା । କପ୍ତାନ୍ ବେଷ୍ଟ ପର୍ତ୍ତୁଗିଜମାନଙ୍କୁ ପରାସ୍ତ କରିଥିଲେ । ସେହି ବର୍ଷ ଇଂରେଜରାଜଦୂତ ସର୍ ଟମାସ୍ ରୋ ଇଂଲଣ୍ଡରୁ ଆସି ଭାରତରେ ବାଣିଜ୍ୟ କରିବା ସକାଶେ ବାଦସାହ ଜାହାଙ୍ଗିରଙ୍କଠାରୁ ଅନୁମତି ନେଇଥିଲେ ।

ଅମ୍ବୋୟ୍‌ନାର ହତ୍ୟା :—ପୂର୍ବଦେଶ ସହିତ ବାଣିଜ୍ୟରେ ଓଲନ୍ଦାଜମାନେ ଇଂରେଜମାନଙ୍କ ସଙ୍ଗେ ଭାରି ଶତ୍ରୁତା କରିଥିଲେ । ଓଲନ୍ଦାଜମାନେ ୧୬୨୩ର ଫେବୃଆରିମାସରେ ଇଂରେଜ କପ୍ତାନ୍ ଟାଓାରସନଙ୍କ ସହ ୯ ଜଣ ଇଂରେଜ, ୯ ଜଣ ଜାପାନୀ ଥିଉ ଏକ ଜଣ ପର୍ତ୍ତୁଗିଜଙ୍କୁ ଆମ୍ବୋୟ୍‌ନାଠାରେ ନିର୍ଦ୍ଦୟଭାବରେ ହତ୍ୟା କରିଥିଲେ । ଇଂରେଜ-

ରାଜ ତହିଁରେ ବିରକ୍ତ ହୋଇ ଓଲନ୍ଦାଜ ଗବର୍ଣ୍ଣମେଣ୍ଟଙ୍କୁ ଲେଖିଥିଲେ । ଓଲନ୍ଦାଜମାନେ ଅବଶେଷରେ ହତ ବ୍ୟକ୍ତିମାନଙ୍କର ଉତ୍ତରାଧିକାରୀ-ମାନଙ୍କୁ କ୍ଷତିପୂରଣ ଦେବା ସକାଶେ ୩୬୧୫ ପାଉଣ୍ଡ ଦେଇଥିଲେ । ଏହି ସମୟଠାରୁ ଇଂରେଜମାନେ ଭାରତୀୟ ଦ୍ୱୀପପୁଞ୍ଜ ସଙ୍ଗେ ବାଣିଜ୍ୟ କରିବାକୁ ମନ ନ ବଳାଇ ଭାରତବର୍ଷ ସଙ୍ଗେ ବାଣିଜ୍ୟ କଲେ ।

ଅନ୍ୟାନ୍ୟ ଇଉରୋପୀୟମାନଙ୍କର ଆଗମନ :—ଫ୍ରାନ୍ସର ଅଧିବାସୀ ଫରାସିମାନେ ୧୬୦୪ରେ ଏକ କମ୍ପାନି ଗଠନ କରି ଭାରତକୁ ବାଣିଜ୍ୟ କରିବା ସକାଶେ ଆସିଥିଲେ । ୧୬୧୬ରେ ଡେନମାର୍କର ଅଧିବାସୀ ଦିନାମାରମାନେ ମଧ୍ୟ ବାଣିଜ୍ୟ ସକାଶେ ଭାରତକୁ ଆସିଥିଲେ । ୧୬୧୫ରେ ସ୍କଟଲଣ୍ଡବାସୀମାନେ ଏକ କମ୍ପାନି ଗଠନ କରିଥିଲେ । କିନ୍ତୁ କମ୍ପାନି ଗଠିତ ନ ହେଉଣୁ ତାହାର ଅସ୍ତିତ୍ୱ ଲୋପ ପାଇଥିଲା । ତତ୍ପରେ ସ୍ପେନ, ଅଷ୍ଟ୍ରିୟା, ସୁଇଡ଼େନ ଓ ପ୍ରସିୟାର ଅଧିବାସୀମାନେ ଭାର-ତୀୟ ଦ୍ୱୀପପୁଞ୍ଜରେ ବାଣିଜ୍ୟ କରିବା ସକାଶେ ଆସିଥିଲେ । କିନ୍ତୁ ଏମାନେ କୌଣସି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିନାହାନ୍ତି ।

ଇଉରୋପୀୟ ଜାତିମାନଙ୍କର ଏ ଦେଶରେ କାର୍ଯ୍ୟକଳାପ ବର୍ଣ୍ଣନା କରିବାପୂର୍ବରୁ କି ହେତୁରୁ ଇଂଲଣ୍ଡରେ ଇଷ୍ଟ ଇଣ୍ଡିଆ କମ୍ପାନି ଗଠିତ ହୋଇଥିଲା ତାହାହିଁ ତଳେ ବର୍ଣ୍ଣିତ ହେବ :—

ଓଲନ୍ଦାଜମାନେ ପୂର୍ବକାଳରେ ଭାରତବର୍ଷୀୟ ମସଲାସବୁ ଇଂଲଣ୍ଡରେ ବିକ୍ରୟ କରୁଥିଲେ । ୧୫୯୯ ଖ୍ରୀଷ୍ଟାବ୍ଦରେ ସେମାନେ ମରିଚ ମସଲାର ଦର ବଢ଼ାଇଦେଇଥିଲେ । ପୂର୍ବେ ଯେଉଁ ମରିଚର ଦର ପାଉଣ୍ଡକୁ ୩ ଶିଲିଙ୍ଗ ଥିଲା, ବର୍ତ୍ତମାନ ତାହା ୬ ଶିଲିଙ୍ଗ ବା ୮ ଶିଲିଙ୍ଗ ମୂଲ୍ୟରେ ବିକ୍ରୀତ ହେଲା । ପାଉଣ୍ଡକ ବା ଲେଖ୍ୟା ଅଧସେର ଓଜନ, ଏକ ଶିଲିଙ୍ଗର ମୂଲ୍ୟ ସେତେବେଳେ ପ୍ରାୟ ଟ ୦୧ ଥିଲା । ତହୁଁ ଲଣ୍ଡନ ସହରରେ ତହିଲ

ପଡ଼ିଗଲା । ଓଲନ୍ଦାଜମାନଙ୍କର ଭାରତବର୍ଷୀୟ ବାଣିଜ୍ୟରେ ଏକାଧିପତ୍ୟ ଉଠାଇଦେବା ନିମନ୍ତେ ଗୋଟିଏ କମ୍ପାନି ଗଠନ କରିବାର ପ୍ରସ୍ତାବ ହେଲା ।

ଉପରୋକ୍ତ ମସିହାର ସେପ୍ଟେମ୍ବର ମାସ ୨୨ ତାରିଖରେ ଲଣ୍ଡନର ବଣିକ୍‌ମାନେ ଲର୍ଡ଼ ମେୟରଙ୍କୁ ସଭାପତି କରି ଫାଉଣ୍ଡରସ୍-ହଲରେ ଏକ ସଭା କଲେ । ଭାରତସହ ପ୍ରତ୍ୟକ୍ଷଭାବରେ ବାଣିଜ୍ୟ କରିବାଲାଗି ଏକ କମ୍ପାନି ଗଠନକରିବା ବିଷୟ ଏହି ସଭାରେ ସ୍ଥିରୀକୃତ ହେଲା । ଇଂଲଣ୍ଡର ରାଣୀ ଏଲିଜାବେଥ ମଧ୍ୟ କମ୍ପାନି ସକାଶ ମୋଗଲସମ୍ରାଟଙ୍କ ପାଖରୁ ଅନୁମତି ନେବାପାଇଁ ସର୍ ଜନ୍ ମିଲ୍‌ଡେନ୍‌ହଲଙ୍କୁ କନଷ୍ଟାଣ୍ଟିନୋପଲ୍-ବାଟେ ଭାରତକୁ ପଠାଇଥିଲେ । ୧୬୦୦ ମସିହା ଡିସେମ୍ବର ୩୧ ତାରିଖରେ କମ୍ପାନି ରାଜସନନ୍ଦ ପାଇଲେ ଏବଂ ଏହି କମ୍ପାନିର ନାମ ହେଲା 'ଲଣ୍ଡନ କମ୍ପାନି' । ଏହି କମ୍ପାନିରେ ୧୨୫ ଜଣ ଅଂଶିଦାର ଥିଲେ ଏବଂ ମୂଳଧନ ୭୦,୦୦୦ ପାଉଣ୍ଡ ଥିଲା । ୧୬୧୨ ରେ ଏହାର ମୂଳଧନ ୪୦୦,୦୦୦ ପାଉଣ୍ଡ ହେଲା । ୧୬୩୫ ରେ 'ଆସାଡ଼ା ବଣିକ୍‌ସମାଜ' ବୋଲି ଆଉ ଗୋଟିଏ କମ୍ପାନି ସ୍ଥାପିତ ହେଲା, କିନ୍ତୁ ଏହା ୧୬୫୦ ରେ ଲଣ୍ଡନ କମ୍ପାନିସହ ମିଶିଯାଇଥିଲା । ୧୬୫୫ ରେ କେତେକଜଣ ବଣିକ୍ ଭାରତସହ ବାଣିଜ୍ୟ କରିବା ସକାଶ କ୍ରମବେଲ୍‌ଙ୍କ ପାଖରୁ ସନନ୍ଦ ନେଇ ଏକ କମ୍ପାନି ଗଠନ କଲେ । କିନ୍ତୁ ଦୁଇବର୍ଷ ପରେ ତାହା ଲଣ୍ଡନ କମ୍ପାନିସହ ମିଶିଗଲା । ୧୬୯୮ ରେ ୨୦ ଲକ୍ଷ ପାଉଣ୍ଡ ମୂଳଧନରେ ଆଉ ଏକ କମ୍ପାନି ଗଠିତ ହେଲା । ଏମାନେ ପୂର୍ବ କମ୍ପାନିସହ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ କଲେ । ଲର୍ଡ଼ ଗଡ଼ଲ୍‌ଫିନ୍ ଏହି ପ୍ରତିଦ୍ୱନ୍ଦ୍ୱିତାକୁ ଆପୋଷରେ ଭାଙ୍ଗି-ଦେଇଥିଲେ । ୧୭୦୯ ରେ ଲଣ୍ଡନ କମ୍ପାନିସହ ଏହି କମ୍ପାନି ମିଶିଗଲା । ନୂତନ କମ୍ପାନିର ନାମ ହେଲା "ଭାରତ ଓ ଭାରତୀୟ ଦ୍ୱୀପପୁଞ୍ଜ ସହି ବାଣିଜ୍ୟ କରିବା ସକାଶ ଲଣ୍ଡନର ବଣିକ୍‌ସମୂହର ସମ୍ମିଳିତ କମ୍ପାନି" ।

## ୧୭ଶ ଅଧ୍ୟାୟ ।

### ଭାରତରେ ଇଉରୋପୀୟମାନଙ୍କର ପ୍ରାଥମିକ ଉପନିବେଶ— ପର୍ତ୍ତୁଗିଜ, ଓଲନ୍ଦାଜ, ଫରାସି, ଇଂରେଜ ଓ ଦିନାମାର ।

ପୂର୍ବ ଗଳ୍ପରେ କୁହାହୋଇଅଛି ଯେ, ଭାସ୍କୋଡ଼ିଗାମା ୧୮୯୮ ମସିହା ମଇମାସ ତା ୨୦ ରିଖରେ କାଲିକଟ୍ ରାଜ୍ୟରେ ପହୁଞ୍ଚିଥିଲେ । କାଲି-କଟର ରାଜା ଜାମୋରିନ ଅତି ସମାଦରସହ ତାଙ୍କୁ ଗ୍ରହଣ କରିଥିଲେ । ଆରବୀୟମାନେ ଏହାଙ୍କର ଅନିଷ୍ଟସାଧନ କରିବାଲାଗି ଚେଷ୍ଟା କରି-ଥିଲେ ; କିନ୍ତୁ ଜାମୋରିନଙ୍କ ଲାଗି କିଛି କରିପାରି ନ ଥିଲେ । ଭାସ୍କୋ-ଡ଼ିଗାମା ମା ୬ ସ କାଲିକଟ୍ରେ ରହି ଜାମୋରିନଙ୍କଠାରୁ ପର୍ତ୍ତୁଗାଲର ରାଜାଙ୍କ ପାଖକୁ ଖଣ୍ଡିଏ ଭିଷା ନେଇଗଲେ । ଭିଷାର ମର୍ମ୍ମ ଏହି :— "ଆପଣଙ୍କ ଦେଶର ଭାସ୍କୋଡ଼ିଗାମା ଅମ୍ଭ ରାଜ୍ୟକୁ ଆସିବାରୁ ଅମ୍ଭେ ଅତ୍ୟନ୍ତ ସନ୍ତୁଷ୍ଟ ହେଲୁଁ । ଆମ୍ଭ ଦେଶରେ ପ୍ରଚୁର ପରିମାଣରେ ଲବଙ୍ଗ, ଦାରୁଚିନି, ଅଦା, ମରିଚ ଏବଂ ବହୁମୂଲ୍ୟ ପ୍ରସ୍ତର ଅଛି । ଅମ୍ଭେ ଆପଣଙ୍କ ଦେଶରୁ କେବଳ ସୁନା, ରୂପା, ପ୍ରବାଳ ପାଇବାର ଆଶା କରୁଁ ।"

୧୫୦୨ ରେ ପର୍ତ୍ତୁଗାଲର ରାଜା ରୋମାନକାଥଲିକ୍ ଖ୍ରୀଷ୍ଟାନ-ମାନଙ୍କର ପ୍ରଧାନ ଧର୍ମ୍ମଯାଜକ ରୋମନଗରର ପୋପଙ୍କଠାରୁ ପୂର୍ବଦେଶରେ ବାଣିଜ୍ୟ କରିବା ସକାଶେ ଅନୁମତି ପାଇଥିଲେ । ସେ ଭାସ୍କୋଡ଼ିଗାମାଙ୍କୁ ୨୦ ଖଣ୍ଡ ଜାହାଜ ଓ କେତେକ ସୈନ୍ୟ ଦେଇ ଦ୍ୱିତୀୟଥର ଭାରତକୁ ପଠାଇଲେ । ସେ କୋଚିନ ଓ କାନାନୋର ରାଜାଦ୍ୱୟଙ୍କ ସାହାଯ୍ୟରେ ଜାମୋରିନଙ୍କୁ ପରାସ୍ତ କଲେ । ଅଳ୍ପଦିନ ମଧ୍ୟରେ ପର୍ତ୍ତୁଗିଜମାନେ ଭାରତରେ କ୍ଷମତାଶାଳୀ ହୋଇଉଠିଲେ । ତତ୍ପରେ ୧୫୦୫ ରେ ଆଲମିଡ଼ା ନାମକ ଏକ ବ୍ୟକ୍ତି ୨୨ ଖଣ୍ଡ ଜାହାଜ ଓ ୧୫୦୦ ସୈନ୍ୟ ଘେନି

ସତୀଦାହପ୍ରଥା-ନିବାରଣ ଓ ଠଗଦମନ :—ଅନେକ କାଳରୁ ସତୀ-ଦାହପ୍ରଥା ଭାରତବର୍ଷରେ ପ୍ରଚଳିତ ଥିଲା । ଲର୍ଡ଼ ବେଣ୍ଟିକ୍ ଏହି ପ୍ରଥା ରହିତ କରିଥିଲେ (୧୮୨୯) ।

ଠଗମାନେ ଭାରତରେ ଅତ୍ୟନ୍ତ ଅତ୍ୟାଚାର କରୁଥିଲେ । ଏମାନେ ଖଣ୍ଡିଏ ରୁମାଲ ଦ୍ୱାରା ଲୋକମାନଙ୍କୁ ଶ୍ୱାସରୋଧଦ୍ୱାରା ମାରିପକାଇ ସେମାନଙ୍କର ସର୍ବସ୍ୱ ନେଇଯାଉଥିଲେ । ସେମାନେ କେତେବେଳେ ଦଳବଦ୍ଧ ହୋଇ, କେତେବେଳେ ଏକାକୀ, କେତେବେଳେ ବଣିକ-ବେଶରେ, କେତେବେଳେ ଅବା ଯାତ୍ରିବେଶରେ ଭ୍ରମଣ କରୁଥିଲେ । ଏମାନେ କାଳୀଙ୍କୁ ଉପାସନା କରୁଥିଲେ । କପ୍ତାନ୍ ସ୍ଲିମାନ୍ ଅନେକ କଷ୍ଟ ସହ୍ୟ କରି ଏହି ଠଗମାନଙ୍କୁ ନିର୍ମୂଳ କରିଥିଲେ ।

କନ୍ଧମାନଙ୍କର ହଳଦିକ୍ଷେତ୍ରରେ ନରବଳୀ ଦେବାପ୍ରଥା ଏହି ସମୟରେ ନିବାରିତ ହୋଇଥିଲା ।

କମ୍ପାନୀଙ୍କ ସନନ୍ଦର ନବୀକରଣ—୧୮୩୩ ରେ କମ୍ପାନୀଙ୍କ ସନନ୍ଦର ମିଆଦ ଶେଷ ହେବାରୁ କମ୍ପାନୀ ପୁଣି ୨୦ ବର୍ଷ ସକାଶେ ଭାରତବର୍ଷ-ଶାସନର ଅନୁମତି ପାଇଥିଲେ । ଏହି ସମୟରେ ସମସ୍ତ ଭାରତ ସକାଶେ ଆଇନ ପ୍ରସ୍ତୁତ କରିବାର କ୍ଷମତା ଗବର୍ଣ୍ଣର ଜେନେରେଲଙ୍କୁ ଦିଆ-ହୋଇଥିଲା । ଏହି ସନନ୍ଦରେ କମ୍ପାନୀଙ୍କର ଭାରତବର୍ଷରେ ଏକଚାଟିଆ ବାଣିଜ୍ୟ ରହିତ ହେଲା ।

ଶାସନ-ସଂସ୍କାର :—ବେଣ୍ଟିକ୍ ଯୁଦ୍ଧ ଓ ଶାସନ ସମ୍ବନ୍ଧୀୟ ବ୍ୟୟର ସଙ୍କୋଚ କରିଥିଲେ । ସେ ଆଇନସମୂହର ପରିବର୍ତ୍ତନ ଏବଂ ଉତ୍ତର-ପଶ୍ଚିମ ପ୍ରଦେଶର ରାଜସ୍ୱ ବନ୍ଦୋବସ୍ତ କରିଥିଲେ । ସେ ପାର୍ସିଭାଷା ଉଠାଇ-ଦେଇ ଦେଶୀୟ ଭାଷା ବିଚାରବିଭାଗରେ ପ୍ରଚଳିତ କରାଇଥିଲେ ।

ଦେଶୀୟ ଲୋକେ ଉଚ୍ଚ ପଦର ଅଯୋଗ୍ୟ, ଏହି ବିଶ୍ୱାସରେ ସେମାନଙ୍କୁ ଏଥିପୂର୍ବେ ଉଚ୍ଚ କର୍ମ ଦିଆଯାଉ ନ ଥିଲା । ବେଣ୍ଟିଙ୍କ୍ ଡେପୁଟିକଲେକ୍ଟର ଓ ସବ୍‌ଜଜ୍ ପଦମାନ ସୃଷ୍ଟି କରି ତହିଁରେ ଦେଶୀୟ ଲୋକଙ୍କୁ ନିଯୁକ୍ତ କଲେ । ଏହାଙ୍କ ସମୟରେ ଇଂରେଜିଶିକ୍ଷାର ସୁବ୍ୟ-ବସ୍ଥା ହୋଇଥିଲା । ୧୮୩୫ ଅବ୍ଦରେ ପାଶ୍ଚାତ୍ୟ ଧରଣରେ ଡାକ୍ତରି-ଶିକ୍ଷା ଦେବାଲାଗି କଲିକତାରେ ମେଡ଼ିକାଲ କଲେଜ ସ୍ଥାପିତ ହୋଇ-ଥିଲା । ୧୮୩୫ ରେ ଲର୍ଡ଼ ବେଣ୍ଟିଙ୍କ୍ ଭାରତ ତ୍ୟାଗ କରିଥିଲେ ।

ସର୍ ଚାର୍ଲସ୍ ମେଟ୍‌କାଫ୍—ଲର୍ଡ଼ ଅକ୍‌ଲଣ୍ଡ ଆସିବା ପର୍ଯ୍ୟନ୍ତ ଏ ଗବର୍ଣ୍ଣରଜେନେରାଲ ହୋଇଥିଲେ । ଏହାଙ୍କ ସମୟରେ ମୁଦ୍ରାଯନ୍ତ୍ରକୁ ସ୍ୱାଧୀନତା ଦିଆଯାଇଥିଲା, ଅର୍ଥାତ୍ ଏଦେଶବାସୀମାନେ ନିଜ ମତାମତକୁ ନିର୍ଭୟଚିତ୍ତରେ ସମ୍ବାଦପତ୍ରରେ ପ୍ରକାଶ କରିବାର ଅଧିକାର ପାଇଥିଲେ ।

---

## ୨୪ଶ ଅଧ୍ୟାୟ ।

### ଲର୍ଡ଼ ଅକ୍‌ଲଣ୍ଡ—ପ୍ରଥମ ଆଫଗାନସମର ।

### ଲର୍ଡ଼ ଏଲେନ୍‌ବରୋ—ସିନ୍ଧୁସମର ।

ଲର୍ଡ଼ ଅକ୍‌ଲଣ୍ଡ ୧୮୩୬ ରେ ଭାରତକୁ ଆସିଥିଲେ ।

ପ୍ରଥମ ଅଫଗାନସମର ।—ଲର୍ଡ଼ ମିଣ୍ଟୋ ଆଫଗାନରାଜ ସାହସୁଜାଙ୍କ ସଙ୍ଗେ ସଦ୍‌ଭାବ ସ୍ଥାପନ କରିଥିଲେ । ୧୮୨୬ ରେ ଦୋସ୍ତମହମ୍ମଦ ସାହ-ସୁଜାଙ୍କୁ ତଡ଼ିଦେଇ ନିଜେ ଅମୀର ହୋଇଥିଲେ । ସାହସୁଜା ଭାରତକୁ ପଳାଇଆସି ଇଂରେଜମାନଙ୍କର ଆଶ୍ରୟ ନେଇ ଲୁଧିଆନାରେ ବାସ କରୁ-ଥିଲେ । ଅକ୍‌ଲଣ୍ଡଙ୍କ ସମୟରେ ରୁଷୀୟମାନେ ପ୍ରବଳ ବେଗରେ ମଧ୍ୟଆସି-

ଯିବାକୁ ଅଗ୍ରସର ହେଲେ ! କାଳେ ରୁଷୀୟ ମାନେ ଭାରତ ଆକ୍ରମଣ କରିବେ ଏହି ଭୟରେ ଅକ୍‌ଲଣ୍ଡ ଦୋସ୍ତମହମ୍ମଦଙ୍କ ସଙ୍ଗେ ସଦ୍‌ଭାବ ରଖିବା-ଲାଗି କାବୁଲକୁ ଦୂତ ପଠାଇଥିଲେ । ଏହି ସମୟରେ ରୁଷୀୟ ଦୂତ କାବୁଲରେ ବାସ କରୁଥିଲେ । ଦୋସ୍ତମହମ୍ମଦ ଇଂରେଜ ଦୂତଙ୍କୁ କହିଲେ ଯେ, ସେ ପେଶବାର ପ୍ରାପ୍ତ ହେଲେ ଇଂରେଜମାନଙ୍କ ପ୍ରସ୍ତା-ବରେ ସମ୍ମତ ହୋଇଯାଇବେ । ମାତ୍ର ପେଶବାର ରଣଜିତ୍‌ସିଂହଙ୍କର ଅଧିକାରରେ ଥିବାରୁ ଅକ୍‌ଲଣ୍ଡ ଏଥିରେ ସମ୍ମତ ହେଲେ ନାହିଁ । ଇଂରେଜ ଦୂତ ଅକୃତକାର୍ଯ୍ୟ ହୋଇ ଫେରିଅସିବାରୁ ଅକ୍‌ଲଣ୍ଡ ସାହସୁଜାଙ୍କୁ କାବୁଲସିଂହାସନରେ ବସାଇବାକୁ ସଂକଳ୍ପ କଲେ । ଯୁଦ୍ଧ-ଘୋଷଣା ହେଲା (୧୮୩୮) । ଦୋସ୍ତମହମ୍ମଦ ପରାଜିତ ହୋଇ କଲି-କତାରେ ବନ୍ଦଭାବରେ ବାସ କଲେ । ସାହସୁଜା ଆଫଗାନସିଂହାସନ ଆରୋହଣ କଲେ । ଏକଦଳ ଇଂରେଜସୈନ୍ୟ ଶାନ୍ତିସ୍ଥାପନ କରିବା-ଲାଗି କାବୁଲରେ ରହିଲେ ।

ଆଫଗାନବାସୀମାନେ ଏଥିରେ ଅସନ୍ତୁଷ୍ଟ ହୋଇ ୧୮୪୧ ରେ ବିଦ୍ରୋହୀ ହେଲେ । ସେମାନେ କାବୁଲର ଇଂରେଜପ୍ରତିନିଧିଙ୍କୁ ହତ୍ୟା କଲେ । ଦୋସ୍ତମହମ୍ମଦଙ୍କ ପୁତ୍ର ଆକବରଖାଁ ବିଦ୍ରୋହୀମାନଙ୍କର ନେତା ହେଲେ । ଇଂରେଜ ସେନାପତି ଆକବରଖାଁଙ୍କ ସଙ୍ଗେ ସନ୍ଧିସ୍ଥାପନ କରି ଭାରତକୁ ଫେରିଆସିଲେ । ମାତ୍ର ଖାଇବର ପଥରେ ୪ ସହସ୍ର ସୈନ୍ୟ ଏବଂ ୧୨ ସହସ୍ର ଅନ୍ୟ ନ୍ୟ ଲୋକ ଶୀତ ବା ଆଫଗାନମାନଙ୍କ ଅସ୍ତ୍ର ଦ୍ୱାରା ନିହତ ହୋଇଥିଲେ । କେବଳ ଡାକ୍ତର ବ୍ରାଇଡ଼ନ ଇଂରେଜମାନଙ୍କୁ ଏହି ଦାରୁଣ ସଂବାଦ ଦେବାଲାଗି ଜେଲାଲବାଦରେ ପହୁଞ୍ଚିଥିଲେ । ତଦନନ୍ତର ଲର୍ଡ ଅକ୍‌ଲଣ୍ଡ ବିଲାତକୁ ଫେରିଯାଇଥିଲେ ।

ଲର୍ଡ ଏଲେନ୍‌ବରୋ ୧୮୪୨ରେ ଭାରତରେ ଉପସ୍ଥିତ ହୋଇ

ଏକଦଳ ସୈନ୍ୟ ଅଫଗାନସ୍ଥାନକୁ ପଠାଇଲେ । କାବୁଲ ଅଧିକୃତ ହେଲା, ଏବଂ ଇଂରେଜବନ୍ଦୀମାନେ ଖଲାସ ପାଇଲେ ।

ତତ୍ପରେ ଇଂରେଜସୈନ୍ୟମାନେ ଅଫଗାନସ୍ଥାନରୁ ଫେରି ଆସିଲେ । ସାହସୁଜା ଇତିପୂର୍ବେ ବିଦ୍ରୋହୀମାନଙ୍କ କର୍ତ୍ତୃକ ନିହତ ହୋଇଥିବାରୁ ଦୋସ୍ତମହମ୍ମଦ ଅମୀର ହେଲେ ।

ସିନ୍ଧୁସମର ।—ସିନ୍ଧୁପ୍ରଦେଶର ଅମୀରମାନେ ଇଂରେଜଙ୍କର ଶତ୍ରୁ-ମାନଙ୍କ ସହିତ ଯୋଗ ଦେଇଥିବା ଦୋଷହେତୁରୁ ଏଲେନ୍‌ବରୋ ସେମା-ନଙ୍କ ବିରୁଦ୍ଧେ ଯୁଦ୍ଧଘୋଷଣା କଲେ । ସେମାନେ ସର୍ ଚାର୍ଲସ୍ ନେପିୟରଙ୍କ ଦ୍ୱାରା ମିଆନ ଓ ହାଇଦ୍ରାବାଦରେ ପରାଜିତ ହୋଇଥିଲେ (୧୮୪୩) । ଫଳସ୍ୱରୂପ ସିନ୍ଧୁପ୍ରଦେଶ ବମ୍ବେଇ ପ୍ରେସିଡେନ୍‌ସି ସହିତ ମିଳିତ ହେଲା ।

ଗୋୟାଲିୟର-ଯୁଦ୍ଧ ।—ସିନ୍ଧିୟାରାଜ୍ୟରେ ଗୃହବିବାଦ ଲାଗିବାରୁ ଇଂରେଜମାନେ ଏକ ପକ୍ଷ ଅବଲମ୍ବନ କରି ଅନ୍ୟ ପକ୍ଷକୁ ମହାରାଜପୁର ଓ ପୁନିଆରରେ ପରାସ୍ତ କରିଥିଲେ । ଫଳସ୍ୱରୂପ ସିନ୍ଧିୟାରାଜ୍ୟ ଇଂରେଜମାନଙ୍କର କରଦ ହେଲା ।

---

## ୨୫ଶ ଅଧ୍ୟାୟ ।

### ଲର୍ଡ଼ ହାର୍ଡ଼ିଞ୍ଜ—ପ୍ରଥମ ଶିଖସମର ।

ଲର୍ଡ଼ ହାର୍ଡ଼ିଞ୍ଜ ୧୮୪୪ରେ ଭାରତର ଶାସନଭାର ଗ୍ରହଣ କଲେ । ଏ ଜଣେ ବହୁଦର୍ଶୀ ସୈନିକ ପୁରୁଷ ଥିଲେ । ଫରାସିମାନଙ୍କ ସହ ଯୁଦ୍ଧରେ ଏହାଙ୍କର ଗୋଟିଏ ହାତ କାଟିହୋଇଯାଇଥିଲା । ସେହିହେତୁରୁ ଭାରତବାସୀମାନେ ଏହାଙ୍କୁ ହାତକଟା ଲାଟ୍ ଡାକୁଥିଲେ ।

ଶିଖଜାତି ।—ବାବା ନାନକ ଶିଖଧର୍ମର ସ୍ଥାପୟିତା ଅଟନ୍ତି । ୧୪୬୯ରେ ଲାହୋରନିକଟବର୍ତ୍ତୀ କାନାକୁଚ୍ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ସେ ଜାତିରେ କ୍ଷତ୍ରିୟ ଥିଲେ । ହିନ୍ଦୁ ଓ ମୁସଲମାନମାନଙ୍କର ଅନେକ ଧର୍ମଶାସ୍ତ୍ର ପାଠ କରି ଓ ଭାରତବର୍ଷ ଏବଂ ଆରବର ଅନେକ ତୀର୍ଥ ବୁଲି ଅବଶେଷରେ ସେ ଏକ ନୂତନ ଧର୍ମ୍ମ ପ୍ରଚାର କରିଥିଲେ । ଏହି ଧର୍ମ୍ମକୁ ଶିଖଧର୍ମ୍ମ କହନ୍ତି । ଅନେକ ହିନ୍ଦୁ ଓ ମୁସଲମାନ ଏହି ଧର୍ମ୍ମ ଗ୍ରହଣ କରିଥିଲେ । ଶିଖମାନେ ଏକେଶ୍ୱରବାଦୀ ଥିଲେ । ସେମାନେ ଏକ ବୃହତ୍ ସମ୍ପ୍ରଦାୟରେ ପରିଣତ ହୋଇଥିଲେ । ଅରଙ୍ଗଜେବ ଓ ତାହାଙ୍କ ଉତ୍ତରାଧିକାରୀମାନଙ୍କର ଅତ୍ୟାଚାରରେ ପୀଡ଼ିତ ହୋଇ ଶିଖମାନେ ଧର୍ମ୍ମଶିକ୍ଷା ସଙ୍ଗେ ସଙ୍ଗେ ଅସ୍ତ୍ରଶିକ୍ଷା ଆରମ୍ଭ କରିଥିଲେ । କ୍ରମେ ସେମାନେ ଅସ୍ତ୍ରବିଦ୍ୟାରେ ଦକ୍ଷ ହୋଇଉଠିଥିଲେ ।

ରଣଜିତସିଂହ—ରଣଜିତସିଂହ ଶିଖମାନଙ୍କୁ ଜାତୀୟ ଜୀବନ ପ୍ରଦାନ କରିଥିଲେ । ଏହାଙ୍କ ପୂର୍ବେ ଶିଖମାନେ ଏକ ଏକ ଜଣ ସର୍ଦ୍ଦାରଙ୍କ ଅଧୀନରେ ଥିଲେ । ୧୭୮୦ରେ ରଣଜିତସିଂହ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରେ ବସନ୍ତରୋଗରେ ତାହାଙ୍କ ବାମ ଚକ୍ଷୁ ନଷ୍ଟ ହୋଇଥିଲା । ରଣଜିତସିଂହ ବିଦ୍ୟାଶିକ୍ଷା କରି ନ ଥିଲେ । ୨୦ ବର୍ଷ ବୟସରେ ରଣଜିତ କାବୁଲପତିଙ୍କ ଦ୍ୱାରା ଲାହୋରର ଶାସନକର୍ତ୍ତା ନିଯୁକ୍ତ ହୋଇଥିଲେ । ତତ୍ପରେ ସେ ନିଜ ବାହୁବଳରେ ମୁଲତାନଠାରୁ କାଶ୍ମୀରର ଉତ୍ତର ପର୍ଯ୍ୟନ୍ତ ଏବଂ ଶତଦ୍ରୁଠାରୁ ପେଶବାର ପର୍ଯ୍ୟନ୍ତ ରାଜ୍ୟବିସ୍ତାର କରିଥିଲେ । ଲର୍ଡ଼ ମିଣ୍ଟୋ ଏହାଙ୍କ ସଙ୍ଗେ ସନ୍ଧିସ୍ଥାପନ କରିଥିଲେ । ରଣଜିତ ରାଜନୀତିକୁଶଳ, ବୁଦ୍ଧିମାନ୍ ଓ ରଣପଣ୍ଡିତ ଥିଲେ । ୧୮୩୯ରେ ରଣଜିତ ପ୍ରାଣତ୍ୟାଗ କଲେ ।

ପ୍ରଥମ ଶିଖସମର ।—ରଣଜିତସିଂହଙ୍କ ମୃତ୍ୟୁପରେ ଶିଖସୈନ୍ୟମାନେ

ଦୁର୍ଦ୍ଦାନ୍ତ ହୋଇଉଠିଲେ । ନାବାଳକ ରାଜା ଦୁଲୀପସିଂହ ଏମାନଙ୍କୁ ନିଜ ବଶରେ ରଖିପାରୁ ନ ଥିଲେ । ଶିଖସୈନ୍ୟମାନେ ୧୮୪୫ରେ ଶତଲେଜ୍ ନଦୀ ପାରହୋଇ ଇଂରେଜରାଜ୍ୟ ଆକ୍ରମଣ କଲେ । ସର ହିଉଗଫ୍ ଇଂରେଜସୈନ୍ୟମାନଙ୍କର ନେତା ହୋଇଥିଲେ । ଅଳ୍ପଦିନ-ମଧ୍ୟରେ ମୁଦକି, ଫିରୋଜସାହ, ଅଲିବାଲ ଏବଂ ସୋବ୍ରାଓଁରେ ୪ ଗୋଟି ଭିନ୍ନ ଭିନ୍ନ ଯୁଦ୍ଧ ହୋଇଥିଲା । ପ୍ରତ୍ୟେକ ଯୁଦ୍ଧରେ ଉଭୟ ପକ୍ଷର ଅନେକ ସୈନ୍ୟ ନଷ୍ଟ ହୋଇଥିଲେ । କିନ୍ତୁ ଇଂରେଜମାନେ ଜିଣୁଥିଲେ ଅବଶେଷରେ ସନ୍ଧି ହେଲା (୧୮୪୬) । ଦୁଲୀପସିଂହ ରାଜା ବୋଲି ସ୍ୱୀକୃତ ହେଲେ । ଶିଖସୈନ୍ୟସଂଖ୍ୟା କମାଇଦିଆଗଲା, ଆଉ ବେୟାଜ୍ ଓ ଶତଲେଜର ମଧ୍ୟବର୍ତ୍ତୀ ସ୍ଥାନ ଇଂରେଜମାନେ ପାଇଲେ । ଇଂରେଜ-ମାନେ ଯୁଦ୍ଧବ୍ୟୟ ସକାଶେ ୧½ କୋଟି ଟଙ୍କା ଦାବି କରୁଥିଲେ । କିନ୍ତୁ ଦୁଲୀପସିଂହଙ୍କ ପାଖରେ ଏତେ ଟଙ୍କା ନ ଥିଲା । ସେ ସେଥିଲାଗି ଇଂରେଜମାନଙ୍କୁ କାଶ୍ମୀର ଦେଲେ । ଇଂରେଜମାନେ କାଶ୍ମୀରର ଶାସନକର୍ତ୍ତା ଗୋଲାବସିଂହଙ୍କଠାରୁ ୧ କୋଟି ଟଙ୍କା ନେଇ ଏହାକୁ ବିକ୍ରୟ କରିଦେଇଥିଲେ । ସେହି ସମୟଠାରୁ କାଶ୍ମୀର ଗୋଟିଏ ଭିନ୍ନ ରାଜ୍ୟ ହୋଇଅଛି । ଲାହୋରରେ ଏକଦଳ ଇଂରେଜସୈନ୍ୟ ରହିଥିଲେ ।

ହାର୍ଡ଼ିଞ୍ଜଙ୍କ ଅମଳରେ ଭାରତରେ ରେଲୱେ ଓ ଟେଲିଗ୍ରାଫ୍ ବସି-ବାର ଏବଂ ଇଂରେଜ ଶିକ୍ଷା ଦେବାର ପ୍ରସ୍ତାବ ଚାଲିଥିଲା । ଦେଶୀୟ-ରାଜାମାନଙ୍କ ରାଜ୍ୟରେ ସତୀଦାହପ୍ରଥା ରହିତ କରି ଏବଂ ଦେଶୀୟ ଲୋକମାନଙ୍କୁ ରାଜକାର୍ଯ୍ୟରେ ନିୟୋଗ ପ୍ରଭୃତି ଅନେକ ଦେଶହିତକର କାର୍ଯ୍ୟ କରି ହାର୍ଡ଼ିଞ୍ଜ ଏ ଦେଶର ଭକ୍ତିଭାଜନ ହୋଇଥିଲେ ।

# ୨୨ଶ ଅଧ୍ୟାୟ ।

## ଲର୍ଡ଼ ଡେଲ୍‌ହାଉସି—ଦ୍ୱିତୀୟ ଶିଖସମର—ଦ୍ୱିତୀୟ ବ୍ରହ୍ମସମର—ସାମ୍ରାଜ୍ୟଭୁକ୍ତୀକରଣ ନୀତି ।

୧୮୪୮ରେ ହାର୍ଡ଼ିଞ୍ଜ ଭାରତପରିତ୍ୟାଗ କରିବାରୁ ଲର୍ଡ଼ ଡେଲ୍‌ହାଉସି ଗବର୍ଣ୍ଣରଜେନେରାଲ ହୋଇ ଆସିଲେ । ସେ ଶାସନଭାର ଗ୍ରହଣ କରିବାର ପ୍ରାୟ ଛମାସମଧ୍ୟରେ ଶିଖମାନଙ୍କ ସହ ଯୁଦ୍ଧ ହେଲା ।



ଲର୍ଡ ଡେଲହାଉସି

ଦ୍ୱିତୀୟ ଶିଖସମର ।—ଶିଖମାନେ ମନେ ମନେ ଇଂରେଜମାନଙ୍କ ପ୍ରତି ଅସନ୍ତୁଷ୍ଟ ଥିଲେ । ଶିଖରାଜମାତା ଇଂରେଜଙ୍କ ବିରୁଦ୍ଧେ ଷଡ଼ଯନ୍ତ୍ର କରିଥିଲେ । ମୁଲତାନର ମୂଲରାଜ ବିଦ୍ରୋହୀ ହୋଇ ଦୁଇଜଣ ଇଂରେଜ କର୍ମଚାରୀଙ୍କୁ ହତ୍ୟା କଲେ । କର୍ମଚ୍ୟୁତ ଶିଖସୈନ୍ୟମାନେ ଏ ବିଦ୍ରୋହରେ ଯୋଗ ଦେଲେ । ଯେତେବେଳେ ଇଂରେଜସୈନ୍ୟ ମୁଲତାନ ଅବରୋଧ କରୁଥିଲେ ସେହି ସମୟରେ ଶିଖରାଜମାତା ଶିଖସେନାପତି ଶେରସିଂହଙ୍କୁ ବିଦ୍ରୋହୀମାନଙ୍କ ସହ ଯୋଗ ଦେବାକୁ ପଠାଇଲେ । ଚିଲିୟାନୱାଲା-

ଠାରେ ଶିଖସୈନ୍ୟ ଓ ଇଂରେଜସେନାପତି ଗଫ୍ ସାହେବଙ୍କ ମଧ୍ୟରେ ଗୋଟିଏ ଭୟାନକ ଯୁଦ୍ଧ ହୋଇଥିଲା । କେହି ପରାଜିତ ହୋଇ ନ ଥିଲେ । ଏହି ଯୁଦ୍ଧରେ ଇଂରେଜମାନଙ୍କର ବିଶେଷ କ୍ଷତି ହୋଇଥିଲା (୧୮୪୯) । ଗୁଜରାଟରେ ଆଉ ଗୋଟିଏ ଯୁଦ୍ଧ ହେଲା । ଏହି ଯୁଦ୍ଧରେ ଲର୍ଡ଼ ଗଫ୍ ଶିଖସୈନ୍ୟମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ କରି ଧ୍ୱଂସ କଲେ । ଫଳସ୍ୱରୂପ ୧୮୪୯ ମାର୍ଚ୍ଚ ୨୯ ତାରିଖରେ ଲର୍ଡ଼ ଡେଲ୍‌ହାଉସି ପଞ୍ଜାବ ପ୍ରଦେଶକୁ ଇଂରେଜରାଜ୍ୟଭୁକ୍ତ କଲେ । ମହାରାଜ ଦୁଲିପସିଂହଙ୍କୁ ବାର୍ଷିକ ପାଞ୍ଚଲକ୍ଷ ଟଙ୍କା ପେନ୍‌ସନ୍ ଦିଆଯାଇ ବିଲାତକୁ ନିଆଗଲା । ଶିଖ-ସୈନ୍ୟମାନଙ୍କଠାରୁ ଅସ୍ତ୍ରସମୂହ କାଢ଼ିନିଆଗଲା ।

ଦ୍ୱିତୀୟ ବ୍ରହ୍ମସମର :—ରେଙ୍ଗୁନରେ ଇଂରେଜ ବଣିକ୍‌ମାନଙ୍କ ଉପରେ ବ୍ରହ୍ମବାସୀମାନେ ଅତ୍ୟାଚାର କରିବାରୁ ଦ୍ୱିତୀୟ ବ୍ରହ୍ମଯୁଦ୍ଧ ହୋଇଥିଲା । ଅଳ୍ପକାଳ ଯୁଦ୍ଧପରେ ଇଂରେଜମାନେ ଜୟୀ ହୋଇ ପେଗୁପ୍ରଦେଶ ପାଇଥିଲେ (୧୮୫୨) ।

ଅନ୍ୟାନ୍ୟ ପ୍ରଦେଶାଧିକାର :—୧୮୪୮ ରେ ସେତାରାର ରାଜାଙ୍କ ମୃତ୍ୟୁ ହେଲା । ସେ ଗୋଟିଏ ଦତ୍ତକ ପୁଅ ଗ୍ରହଣ କରିଥିଲେ । ଡେଲ୍‌ହାଉସି ଏହା ଅନୁମୋଦନ ନ କରି ୧୮୪୯ ରେ ସେତାରାକୁ ଇଂରେଜରାଜ୍ୟ-ଭୁକ୍ତ କଲେ । ଏହି କାରଣରୁ ମଧ୍ୟ ଝାନ୍‌ସି ଓ ନାଗପୁର ରାଜ୍ୟଦ୍ୱୟ ଇଂରେଜରାଜ୍ୟଭୁକ୍ତ ହୋଇଥିଲା (୧୮୫୩) । ୧୮୫୫ ରେ ଆର୍କଟର ନବାବ ଓ ତାଞ୍ଜୋରର ରାଜା ନିଃସନ୍ତାନ ହୋଇ ମୃତ ହେବାରୁ ସେ-ମାନଙ୍କ ରାଜ୍ୟ ଇଂରେଜରାଜ୍ୟସାମିଲ ହୋଇଥିଲା । ନିଜାମ ନିଜ ରାଜ୍ୟରେ ଇଂରେଜସୈନ୍ୟ ରଖି ସେମାନଙ୍କ ବ୍ୟୟ ସକାଶେ ଇଂରେଜମାନଙ୍କୁ ବାର୍ଷିକ କେତେକ ଟଙ୍କା ଦେଉଥିଲେ । କିନ୍ତୁ ସେ ନିୟମିତରୂପେ ଟଙ୍କା ଦାଖଲ କରି ନ ପାରିବାରୁ ବେରାର ପ୍ରଦେଶ ନିଜାମଙ୍କଠାରୁ ନିଆଯାଇ-

ଥିଲା (୧୮୫୩) । ଅଯୋଧ୍ୟାର ନବାବ ସ୍ୱରାଜ୍ୟ ଉତ୍ତମରୂପେ ଶାସନ କରି ନ ପାରିବାରୁ ଡେଲ୍‌ହାଉସି ଅଯୋଧ୍ୟା ପ୍ରଦେଶ ଇଂରେଜରାଜ୍ୟ-ଭୁକ୍ତ କଲେ (୧୮୫୬) । ଅଯୋଧ୍ୟାର ନବାବ ବାର୍ଷିକ ତେରଲକ୍ଷ ଟଙ୍କା ବୃତ୍ତି ନେଇ କଲିକତାରେ ବାସ କଲେ । ୧୮୫୧ ରେ ପେନ୍-ସନ୍‌ପ୍ରାପ୍ତ ବାଜିରାଓଙ୍କ ମୃତ୍ୟୁ ହେବାରୁ ଡେଲ୍‌ହାଉସି ତାଙ୍କ ଦତ୍ତକ ପୁତ୍ର ନାନାସାହେବଙ୍କୁ ଆଉ ବୃତ୍ତି ଦେଲେ ନାହିଁ । ଓଡ଼ିଶାର ଅନୁଗୁଳ ଏହାଙ୍କ ଅମଳରେ ଖାସ୍ ହୋଇଥିଲା ।

କମ୍ପାନିଙ୍କ ସନନ୍ଦର ନବୀକରଣ ।—୧୮୫୩ ରେ କମ୍ପାନିଙ୍କ ସନନ୍ଦର ମିଆଦ ଶେଷ ହେବାରୁ ପୁନର୍ବାର ନୂଆ ସନନ୍ଦ ଦିଆଯାଇଥିଲା । ଏଥର ପୂର୍ବପରି ନିର୍ଦ୍ଦିଷ୍ଟ ସମୟ ଲାଗି ସନନ୍ଦ ଦିଆଯାଇ ନ ଥିଲା । ପାର୍ଲିମେଣ୍ଟ ଯେତେବେଳେ ଇଚ୍ଛା ତେତେବେଳେ ସନନ୍ଦ ରହିତ କରିପାରିବାର ଅଧିକାର ପାଇଥିଲେ । ଏହି ନୂଆ ବନ୍ଦୋବସ୍ତରେ ବଙ୍ଗଳାରେ ଜଣେ ଲେଫ୍‌ଟେନାଣ୍ଟ ଗବର୍ଣ୍ଣର ନିଯୁକ୍ତ ହୋଇଥିଲେ ।

ଲର୍ଡ଼ ଡେଲ୍‌ହାଉସି ୧୮୫୬ ରେ ବିଲାତ ଯାତ୍ରା କଲେ ।

ଲର୍ଡ଼ ଡେଲ୍‌ହାଉସିଙ୍କ ସମୟରେ ଦେଶର ବୈଷୟିକ ଉନ୍ନତି—

ରେଲୱେ ଏବଂ ତାରଡାକ ।

ଭାରତବର୍ଷକୁ ଯେତେ ଶାସନକର୍ତ୍ତା ଆସିଥିଲେ ସେମାନଙ୍କ ମଧ୍ୟରେ ଡେଲହାଉସି ଜଣେ ପ୍ରଧାନ ଶାସନକର୍ତ୍ତା । ଲର୍ଡ଼ ବେଣ୍ଟିଙ୍କ୍‌ଙ୍କ ପରି ଏହି ଲାଟ ମଧ୍ୟ ଦେଶର ବୈଷୟିକ ଓ ନୈତିକ ଉନ୍ନତି ବିଷୟରେ ମନୋ-ଯୋଗ ଦେଉଥିଲେ ; ଏବଂ ତହିଁରେ କୃତକାର୍ଯ୍ୟ ମଧ୍ୟ ହୋଇଥିଲେ । ସେ ପ୍ରତ୍ୟେକ ବିଭାଗରେ କିଛି କିଛି ସଂସ୍କାର କରିଥିଲେ । ତାହାଙ୍କ ଉଦ୍ୟମରେ ଏ ଦେଶରେ ରେଲୱେ ବିସ୍ତାରିତ ହୋଇଥିଲା ; ଏବଂ ତାରଡାକ ମଧ୍ୟ ବସିଥିଲା । ତାହାଙ୍କ ଅମଳରେ ଦୁଇ

ପଇସା ମାସୁଲରେ ଭାରତବର୍ଷର ସବୁ ସ୍ଥାନକୁ ଚଠି ଯିବାର ସୁବିଧା କରାଯାଇଥିଲା । ସେ ପୂର୍ତ୍ତବିଭାଗ ସ୍ଥାପନ କରିଥିଲେ ; ଏହି ବିଭାଗର କାର୍ଯ୍ୟାବଳୀଦ୍ୱାରା କୃଷି ଓ ବାଣିଜ୍ୟର ଶ୍ରୀବୃଦ୍ଧି ସାଧିତ ହୋଇଥିଲା ଓ ଗମନାଗମନର ବିଶେଷ ସୁବିଧା ହୋଇଥିଲା; ବଡ଼ ବଡ଼ ରାସ୍ତାମାନ ପ୍ରସ୍ତୁତ ହୋଇଥିଲା, ଏବଂ ବଡ଼ ବଡ଼ କେନାଲ ବା ଖାଲମାନ କୃଷିର ଉପକାରାର୍ଥ ଖୋଲାଯାଇଥିଲା । ଗାଙ୍ଗେୟ କେନାଲ ଏହି ଲାଟଙ୍କର କୀର୍ତ୍ତି ଅଟେ । ଏହି ଲାଟ୍‌ମହୋଦୟ ଭାରତବାସୀମାନଙ୍କର ମାନସିକ ଓ ନୈତିକ ଉନ୍ନତି ବିଷୟରେ ବିଶେଷ ଯତ୍ନଶୀଳ ଥିଲେ । ଭାରତବାସୀଙ୍କ ମଧ୍ୟରେ ଶିକ୍ଷାର ବିସ୍ତାରଲାଗି ସେ ବିଶେଷ ଚେଷ୍ଟା କରିଥିଲେ । ଏହାଙ୍କ ସଭାର ଅଇନସଭ୍ୟ ବେଥୁନ୍‌ସାହେବ ସ୍ତ୍ରୀଶିକ୍ଷାର ଉନ୍ନତି ନିମନ୍ତେ କଲିକତାରେ ଗୋଟିଏ ବାଳିକାବିଦ୍ୟାଳୟ ସ୍ଥାପନ କରିଥିଲେ । ବର୍ତ୍ତମାନ ସୁଦ୍ଧା ଏହି ବିଦ୍ୟାଳୟ ବେଥୁନ୍‌କଲେଜ ନାମରେ ପରିଚିତ । ୧୮୫୪ ରେ ଏହି ମହାତ୍ମାଙ୍କ ଉଦ୍ୟମରେ କଲିକତା, ମାନ୍ଦ୍ରାଜ ଓ ବମ୍ବେର ପ୍ରେସିଡେନ୍ସିରେ ଏକ ଏକ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । କଲିକତାର ପ୍ରେସିଡେନ୍ସି କଲେଜ ମଧ୍ୟ ଏହାଙ୍କର କୀର୍ତ୍ତି ଅଟେ । ବେସରକାରୀ ସ୍କୁଲମାନଙ୍କୁ ସାହାଯ୍ୟ ଦେବା ପ୍ରଥା ଏହାଙ୍କ ସମୟରେ ପ୍ରଚଳିତ ହୋଇଥିଲା । ଏହିସବୁ ଦେଶହିତକର କାର୍ଯ୍ୟ କରିଥିବାରୁ ଡେଲ୍‌ହାଉସିଙ୍କ ନାମ ପ୍ରତ୍ୟେକ ଭାରତବାସୀଙ୍କ ହୃଦୟରେ ଆଜି ସୁଦ୍ଧା ଅଙ୍କିତ ହୋଇ ରହିଅଛି ।

---

## ୨୭ଶ ଅଧ୍ୟାୟ ।

ଲର୍ଡ଼ କାନିଙ୍ଗ୍—ସିପାହିବିଦ୍ରୋହ ଓ ମହାରାଣୀଙ୍କ ଘୋଷଣାପତ୍ର ।

ଲର୍ଡ଼ କାନିଙ୍ଗ୍ ୧୮୫୬ ରେ ଗବର୍ଣ୍ଣରଜେନେରାଲ ହୋଇ ଭାରତକୁ

ଆସିଥିଲେ । କାନିଙ୍ଗ୍ କଳିକତାକୁ ଆସିବା ସମୟରେ କହିଥିଲେ "ମୁଁ ଭାରତବର୍ଷରେ ଶାନ୍ତିର ଆଶା କରେଁ, ମାତ୍ର ଭାରତର ନିର୍ମଳ ଆକାଶରେ ମନୁଷ୍ୟ-ମୁଷ୍ଟି-ପରିମିତ ଖଣ୍ଡିଏ ମେଘ ଉଦିତ ହୋଇଅଛି ଏବଂ ସେହି ମେଘ କ୍ରମେ ବୃଦ୍ଧି ପାଇ ଆମ୍ଭମାନଙ୍କର ସର୍ବନାଶ କରିପାରେ ।" ତାହାଙ୍କର ଏହି ଭବିଷ୍ୟତ୍ ବାଣୀ ସଫଳ ହୋଇଥିଲା । ଏକବର୍ଷ ନ ଯାଉଣୁ ଏପରି ଗୋଟିଏ ଦୁର୍ଘଟନା ଆସି ଉପସ୍ଥିତ ହେଲା ଯେ ତାହା ଭାରତରେ ଇଂରେଜ ସାମ୍ରାଜ୍ୟକୁ ଟଳମଳ କରିଦେଇଥିଲା ।



ଲର୍ଡ଼ କାନିଙ୍ଗ୍ ।

ସିପାହିବିଦ୍ରୋହର କାରଣ:—ବମ୍ବେର ସିପାହିମାନେ ପୃଥିବୀର ଯେକୌଣସି ସ୍ଥାନକୁ ଯିବାଲାଗି ସ୍ୱୀକୃତ ଥିଲେ ଏବଂ ସେମାନେ ରେଜିମେଣ୍ଟରେ ଭୃତ୍ୟର କାର୍ଯ୍ୟ କରୁଥିଲେ । ବଙ୍ଗପ୍ରଦେଶର ସିପାହିମାନେ ଭାରତବର୍ଷର ବାହାରକୁ ଯିବାଲାଗି ଇଚ୍ଛୁକ ନ ଥିଲେ, ଏବଂ ସେମାନେ ନିଜକୁ ଉଚ୍ଚବଂଶଜାତ ବୋଲି ମନେକରି ଭୃତ୍ୟର କାର୍ଯ୍ୟ କରୁ ନ ଥିଲେ । ଦ୍ୱିତୀୟ ବ୍ରହ୍ମଯୁଦ୍ଧରେ ବଙ୍ଗଦେଶର ଏକଦଳ ସିପାହି ବ୍ରହ୍ମଦେଶକୁ ଯିବାଲାଗି ଅସ୍ୱୀକାର କଲେ । ୧୮୫୬ ରେ ସରକାର-ବାହାଦୁର ଏକ ଆଇନ ଜାରି କଲେ । ତଦନୁସାରେ ଯେଉଁ ଲୋକ

ଯେକୌଣସି ସ୍ଥାନକୁ ଯିବାକୁ ଅସ୍ୱୀକାର କରିବ ସେ ସିପାହି ହୋଇ-ପାରିବ ନାହିଁ । ଏଥିରେ ଲୋକମାନଙ୍କର ଏହି ଧାରଣା ହେଲା ଯେ, ଇଂରେଜମାନେ ଆଉ ଦେଶୀୟ ଲୋକମାନଙ୍କର ଜାତୀୟ ଗୌରବ ରଖିଦେବେ ନାହିଁ । ଯେତେବେଳେ ଟେଲିଗ୍ରାଫ୍ ରେଲୱେ ଓ ଡାକ ବିସ୍ତୃତ ହେଲା, ଏବଂ ଶିକ୍ଷାବିସ୍ତାରଲାଗି ବିଦ୍ୟାଳୟମାନ ବସିଲା, ସେତେବେଳେ ଲୋକେ ମନେ ଭାବିଲେ, ବୋଧ ହୁଏ କମ୍ପାନି ଭାରତ-ବର୍ଷକୁ ବିଲାତ କରିପକାଇବେ । ଲକ୍ଷ ଲକ୍ଷ ଲୋକଙ୍କ ମନରେ ଏହି ଧାରଣା ହେଲା ଯେ, ଇଂରେଜମାନେ ଏଦେଶୀୟମାନଙ୍କୁ ଖ୍ରୀଷ୍ଟିୟାନ କରିଦେବେ । ରାଜ୍ୟଭ୍ରଷ୍ଟ ଓ ବୃତ୍ତିଚ୍ୟୁତ ରାଜବଂଶୀୟମାନେ ଲୋକମାନ-ଙ୍କର ଉତ୍ତେଜନା ବୃଦ୍ଧିକରିବାକୁ ଲାଗିଲେ । ସେମାନେ ବହୁଲୋକ ନିଯୁକ୍ତ କରି ଇଂରେଜପକ୍ଷୀୟ ସିପାହିମାନଙ୍କୁ ଇଂରେଜମାନଙ୍କ ବିରୁଦ୍ଧେ ନାନା କଥା ଶୁଣାଇଲେ । ଏଥିରେ ଇଂରେଜଶାସନ ଉପରେ ସିପାହି-ମାନଙ୍କର ବିରାଗ କ୍ରମଶଃ ବୃଦ୍ଧି ପାଇଲା । ୧୮୫୭ । ୫୮ ରେ ଯେତେ-ବେଳେ ଜ୍ୟୋତିଷମାନେ ବର୍ଷର ଆରମ୍ଭରେ ନୂଆ ପାଞ୍ଜି ଶୁଣାନ୍ତି, ସେତେବେଳେ ବର୍ଷର ଫଳାଫଳ ମଧ୍ୟରେ ଏହା ମଧ୍ୟ କହିବାକୁ ଲାଗିଲେ ଯେ, ପଲାସିଯୁଦ୍ଧ ଉତ୍ତାରୁ ଶତବର୍ଷ ହେଲାଣି, କମ୍ପାନିର ରାଜ୍ୟ ଆଉ ରହିବ ନାହିଁ । କେତେକ ଲୋକ ଏହା ଶୁଣି ବିଶ୍ୱାସ କଲେ । ୧୮୫୭ ରେ ରାଇଫଲ୍ ନାମକ ଏକପ୍ରକାର ବନ୍ଧୁକ ସିପାହିମାନଙ୍କର ବ୍ୟବହାର ସକାଶେ ବିଲାତରୁ ଅଣାହୋଇଥିଲା । ତାହିର ଟୋଟାକୁ ଦାନ୍ତରେ କାଟିବାକୁ ପଡୁଥିଲା । ରାଷ୍ଟ୍ର ହେଲା ଯେ ଟୋଟାରେ ଗୋରୁ ଓ ଘୁଷୁରିର ଚର୍ବି ବୋଳାହୋଇଥାଏ, ଏଣୁ ତାହା ହିନ୍ଦୁ ଓ ମୁସଲ-ମାନମାନଙ୍କର ଅସ୍ପୃଶ୍ୟ ଅଟେ । ହିନ୍ଦୁ ଓ ମୁସଲମାନ ଉଭୟଙ୍କର ଜାତି ଓ ଧର୍ମ ନାଶକରିବାଲାଗି ଟୋଟା ବ୍ୟବହୃତ ହେଉଅଛି । ଏଥିରେ ବିଶ୍ୱାସ କରି ସିପାହିମାନେ ଅତ୍ୟନ୍ତ ଉତ୍ତେଜିତ ହେଲେ ।

ବିଦ୍ରୋହର ବିସ୍ତାର ।—ପ୍ରଥମେ ବଙ୍ଗଦେଶର ବାରାକ୍‌ପୁର ଓ ବର-ହମପୁରର ସିପାହିମାନେ ଦାନ୍ତରେ ଟୋଟା କାଟିବାକୁ ଅସମ୍ମତ ହୋଇ ବିଦ୍ରୋହର ଚିହ୍ନ ଦେଖାଇଥିଲେ । ସେମାନଙ୍କଠାରୁ ଅସ୍ତ୍ରଶସ୍ତ୍ର ଛଡ଼ାଇ-ନେଇ ଚାକିରିରୁ ବରଖାସ୍ତ କରାଗଲା । ପ୍ରକୃତ ବିଦ୍ରୋହ ପ୍ରଥମେ ମିରଟ ସହରରେ ଆରମ୍ଭ ହୋଇଥିଲା । ୧୮୫୭ ମଇମାସ ୧୦ ତାରିଖରେ ମିରଟର ସିପାହିମାନେ ବିଦ୍ରୋହୀ ହେଲେ । ଏମାନେ ଘର ପୋଡ଼ିଦେଲେ, ଯେଉଁଠାରେ ସାହେବ ଦେଖିଲେ ସେଠାରେ ତାହାଙ୍କୁ ହତ୍ୟାକଲେ, ଆଉ ଦିଲ୍ଲୀଆଡ଼କୁ ଅଗ୍ରସର ହେଲେ । ସେମାନେ ଦିଲ୍ଲୀରେ ଉପସ୍ଥିତ ହେଲାକ୍ଷଣି ଦିଲ୍ଲୀର ସିପାହିମାନେ ବିଦ୍ରୋହୀ ହେଲେ । ସେମାନେ ତତ୍-କାଳୀନ ନାମମାତ୍ର ମୋଗଲସମ୍ରାଟ୍ ବାହାଦୁରସାହାଙ୍କୁ ଦିଲ୍ଲୀର ସମ୍ରାଟ୍ ବୋଲି ଘୋଷଣା କଲେ । ତପୂରେ ଉତ୍ତର ଭାରତବର୍ଷର ଯେତେ ସ୍ଥାନରେ ସିପାହି ଥିଲେ ତେତେ ସ୍ଥାନରେ ବିଦ୍ରୋହ ଲାଗିଲା । ପ୍ରତ୍ୟେକ ଷ୍ଟେସନରେ ସିପାହିମାନେ ଇଂରେଜମାନଙ୍କୁ ହତ୍ୟା କରୁଥିଲେ ଓ ଖଜଣା-ଖାନା ଲୁଟିକରି ନେଉଥିଲେ । ତତ୍ପରେ ସେମାନଙ୍କର କେନ୍ଦ୍ରସ୍ଥଳୀ ଦିଲ୍ଲୀ କିମ୍ବା ଲକ୍ଷ୍ନୌକୁ ଅଗ୍ରସର ହେଉଥିଲେ ।

କାନପୁର ବିଦ୍ରୋହ ।—ଜୁନମାସ ୪ ତାରିଖରେ ଏହିଠାରେ ବିଦ୍ରୋ-ହାରମ୍ଭ ହେଲା । ସିପାହିମାନେ କେତେକ ଘର ପୋଡ଼ିଦେଇ ଦିଲ୍ଲୀ ଅଡ଼କୁ ଅଗ୍ରସର ହେଲେ । ବାଜିରାଓଙ୍କ ପୋଷ୍ୟପୁତ୍ର ନାନାସାହେବ ସେମାନଙ୍କୁ ଲେଉଟାଇଆଣି ସେମାନଙ୍କର ନେତା ହେଲେ । ବିଦ୍ରୋହୀମାନେ ନଗର ଲୁଣ୍ଠନ କରି ଇଂରେଜ ଦେଖିବାମାତ୍ରେ ହତ୍ୟା କଲେ ଏବଂ ତତ୍ପରେ କାନପୁରସ୍ଥ ଇଂରେଜଶିବିର ଅବରୋଧ କଲେ । ଶିବି-ରସ୍ଥ ଇଂରେଜମାନଙ୍କର ଅନ୍ନଜଳର ଅଭାବ ହେଲା । ଜୁନମାସ ତା ୨୭ ରିଖରେ ନାନାସାହେବ କହିପଠାଇଲେ ଯେ, ଅସ୍ତ୍ର ତ୍ୟାଗକଲେ ସେ

ଇଂରେଜମାନଙ୍କୁ ଏଲାହାବାଦ ଯିବାକୁ ଦେବେ । ଜୁନମାସ ତା ୨୭ ରଖରେ ପ୍ରାୟ ୪୫୦ ଜଣ ଇଂରେଜ ଶିବିର ତ୍ୟାଗକରି ନୌକା ଆରୋହଣ କରିବାମାତ୍ରେ, ସିପାହିମାନେ ଗଙ୍ଗାର ଉଭୟକୂଳରୁ ସେମାନଙ୍କ ଉପରେ ଗୁଳିବୃଷ୍ଟି କଲେ । ଅନେକ ଇଂରେଜ ହତ ହେଲେ । ନାନାସାହେବ ଅବଶିଷ୍ଟ ସ୍ତ୍ରୀ ଓ ବାଳକମାନଙ୍କୁ ବନ୍ଦୀ କରି ରଖିଲେ । ସେନାପତି ହାବେଲକ୍ କାନପୁର ଆଡ଼କୁ ଆସୁଥିବାର ଶୁଣି ସେ ସେହି ସ୍ତ୍ରୀ, ବାଳକ ଓ ବାଳିକାମାନଙ୍କୁ ଅତି ନିଷ୍ଠୁର ଭାବରେ ହତ୍ୟାକରି ମୃତଦେହମାନ ଏକ କୂପମଧ୍ୟରେ ପକାଇଦେଇ ପଳାଇଲେ ।

ଅଯୋଧ୍ୟା, ରୋହିଲଖଣ୍ଡ ଓ ମଧ୍ୟଭାରତରେ ବିଦ୍ରୋହ ।—ଲକ୍ଷ୍ନୌ-ନଗରର ସିପାହିମାନେ ମେ ମାସ ୩ ତାରିଖରେ ବିଦ୍ରୋହୀ ହେଲେ । ବିଦ୍ରୋହ ଅତି ଶୀଘ୍ର ସମସ୍ତ ଅଯୋଧ୍ୟା ଓ ରୋହିଲଖଣ୍ଡରେ ବ୍ୟାପିଗଲା । ବେଗମ୍ ଓ ଅନେକ ତାଲୁକ-ଦାର ଏହି ବିଦ୍ରୋହରେ ଯୋଗ ଦେଇ-ଥିଲେ । ବିଦ୍ରୋହୀମାନେ ଲକ୍ଷ୍ନୌ ଅବରୋଧ କଲେ । ଜୁଲାଇମାସରେ ଅଯୋଧ୍ୟାର ଚିଫ୍ କମିଶନର ସର୍ ହେନେରିଲରେନ୍ସ୍ ବିଦ୍ରୋହୀମାନଙ୍କ ଦ୍ୱାରା ହତ ହୋଇଥିଲେ । ମଧ୍ୟଭାରତର ଝାନ୍ସିରେ ସିପାହିମାନେ ବିଦ୍ରୋହୀ ହେବାରୁ ଝାନ୍ସିର ରାଣୀ ସେମାନଙ୍କର ନେତା ହେଲେ ଏବଂ ଆପଣାକୁ ସ୍ୱାଧୀନ ବୋଲି ଘୋଷଣା କଲେ ।

ବିଦ୍ରୋହ-ଦମନ ।—୧୮୫୭ ଜୁଲାଇମାସ ତା ୧୬ ରିଖରେ ନାନା-ସାହେବଙ୍କ ସୈନ୍ୟମାନେ ହାବେଲକଙ୍କ ଦ୍ୱାରା ସମ୍ପୂର୍ଣ୍ଣରୂପେ ପରାଜିତ ହେଲେ । ହାବେଲକ୍ କାନପୁରରେ ପହଞ୍ଚି ଦେଖିଲେ ଯେ, ଦୁଇଦିନ ପୂର୍ବରୁ ନାନାସାହେବ ବନ୍ଦୀକୃତ ସ୍ତ୍ରୀ ଓ ବାଳକମାନଙ୍କୁ ହତ୍ୟାକରି ମୃତ ଦେହମାନ କୂପରେ ପକାଇଦେଇ ପଳାଇଯାଇଅଛନ୍ତି । ଛଅମାସ ଅବରୋଧପରେ ଦିଲ୍ଲୀନଗର ସେପ୍ଟେମ୍ବରମାସରେ ପୁନରଧିକୃତ

ହୋଇଥିଲା, କିନ୍ତୁ ଇଂରେଜ ସେନାପତି ନିକୋଲ୍‌ସନ୍ ନିହତ ହୋଇ-ଥିଲେ । ବୃଦ୍ଧ ମୋଗଲସମ୍ରାଟ୍ ବନ୍ଦୀ ହେଲେ ଏବଂ ରେଙ୍ଗୁନକୁ ପଠା-ଯାଇଥିଲେ । ତାଙ୍କର ଦୁଇ ପୁତ୍ର ଓ ଏକ ପୌତ୍ରଙ୍କୁ ଗୁଳିଦ୍ୱାରା ହତ୍ୟା କରାଯାଇଥିଲା । କିଛିଦିନ ପରେ ଜେନେରାଲ ହାବେଲକ୍ ଓ ଦେଟ୍ରାମ୍ ଲକ୍ଷ୍ନୌ ଆଡ଼କୁ ଅଗ୍ରସର ହେଲେ, କିନ୍ତୁ ଏମାନଙ୍କର ସୈନ୍ୟ ଅଳ୍ପ ଥିବାରୁ ଏମାନେ ନିଜେ ଅବରୁଦ୍ଧ ହେଲେ । ପରେ ସର୍ କଲିନ୍ କାମ୍ପବେଲ୍ ଆସି ଏମାନଙ୍କୁ ଉଦ୍ଧାର କରିଥିଲେ (ନଭେମ୍ବର ୧୮୫୭) ।

୧୮୫୮ ମସିହାର ମଇମାସରେ କଲିନ୍ ବରେଲିନଗର ପୁନର-ଧିକାର କଲେ । ଅଯୋଧ୍ୟା ଓ ରୋହିଲାଖଣ୍ଡରେ ଶାନ୍ତି ସ୍ଥାପିତ ହେଲା । ଇତିମଧ୍ୟରେ ସର୍ ହିଉ ରୋଜ୍ ମଧ୍ୟଭାରତରେ ଶାନ୍ତିସ୍ଥାପନ କରି-ଥିଲେ । ଝାନ୍‌ସିର ରାଣୀ ଓ ତାନ୍ତିଆଟୋପି ନାମକ ଜଣେ ମରହଟ୍ଟା ବ୍ରାହ୍ମଣ ଏହାଙ୍କ ସଙ୍ଗେ ଘୋର ଯୁଦ୍ଧ କରିଥିଲେ । ଝାନ୍‌ସିର ରାଣୀ ଯୁଦ୍ଧ କରୁ କରୁ ହତ ହୋଇଥିଲେ (୧୮୫୮ ଜୁନ ତା ୨ ଋଖ) । ତାନ୍ତିଆ ପୁନଃ ପୁନଃ ପରାଜିତ ହୋଇ ପଳାଇଯାଇଥିଲେ । ୧୮୫୯ ରେ ସେ ଧୃତ ହେବାରୁ ତାଙ୍କୁ ଫାଶି ଦିଆଯାଇଥିଲା ।

### ଇଂରେଜରାଜକର୍ତ୍ତୃକ ପ୍ରତ୍ୟକ୍ଷଭାବରେ ଭାରତଶାସନ ଏବଂ ମହାରାଣୀଙ୍କ ଘୋଷଣାପତ୍ର —

ଭାରତବର୍ଷର ଶାସନକାର୍ଯ୍ୟ ଉତ୍ତମରୂପେ ପରିଚାଳିତ ହେବା ଉଦ୍ଦେ-ଶ୍ୟରେ ୧୮୫୮ ମସିହାରେ ପାର୍ଲିମେଣ୍ଟ ମହାସଭାରେ ଏକ ଆଇନ ପ୍ରଣୀତ ହେଲା । ଏହି ଆଇନ ଅନୁସାରେ ଇଂଲଣ୍ଡେଶ୍ୱରୀ ମହାରାଣୀ ଭିକ୍ଟୋରିଆ କମ୍ପାନିଙ୍କ ହସ୍ତରୁ ଭାରତଶାସନର ଭାର ସ୍ୱୟଂ ଗ୍ରହଣ କରିଥିଲେ । ସେହିଦିନଠାରୁ ଭାରତବର୍ଷ ଇଂଲଣ୍ଡରାଜକର୍ତ୍ତୃକ ତାହାଙ୍କର ଏକ ପ୍ରଧାନ ମନ୍ତ୍ରୀଙ୍କ ସାହାଯ୍ୟରେ ଶାସିତ ହେଉଅଛି । ଏହି

ମନ୍ତ୍ରୀଙ୍କୁ ଭାରତର "ସେକ୍ରେଟରୀ ଅବ୍ ଷ୍ଟେଟ୍" ବୋଲଯାଏ । ଏହାଙ୍କ ସଭାରେ ୧୫ ଜଣ ସଭ୍ୟ ଥାନ୍ତି । ଏହି ସଭାକୁ 'ଇଣ୍ଡିଆ କୌନସେଲ୍' ବା ଭାରତସଭା କହନ୍ତି । ଏହିଦିନଠାରୁ ଭାରତର ଗବର୍ଣ୍ଣରଜେନେରାଲ "ଭାଇସ୍‌ରୟ୍" ଅର୍ଥାତ୍ ରାଜପ୍ରତିନିଧି ଉପାଧି ପାଇଥାନ୍ତି ।



ମହାରାଣୀ ଭିକ୍ଟୋରିଆ ।

**ମହାରାଣୀଙ୍କ ଘୋଷଣାପତ୍ର ।**- ୧୮୫୮ ମସିହା ନଭେମ୍ବର ମାସ ୧ ତାରିଖରେ ଏଲାହାବାଦ ନଗରରେ ଏକ ବୃହତ୍ ଦରବାର ହୋଇଥିଲା । ଲର୍ଡ଼ କାନିଙ୍ଗ୍ ଏହି ଦରବାରରେ ମହାରାଣୀ ଭିକ୍ଟୋରିଆଙ୍କର ଭାରତବାସୀମାନଙ୍କ ନିକଟକୁ ପ୍ରେରିତ ଏକ ଘୋଷଣାପତ୍ର ପାଠ କରିଥିଲେ । ସେହି ଘୋଷଣାପତ୍ର ଆମ୍ଭମାନଙ୍କର ପ୍ରଧାନ ସନନ୍ଦ । ତାହାର ସାର ମର୍ମ୍ମ ନିମ୍ନରେ ଦିଆଗଲା ।

"ମହାରାଣୀ ଭିକ୍ଟୋରିଆ ଆଜିଠାରୁ ଭାରତର ଶାସନଭାର ନିଜ ହାତରେ ଗ୍ରହଣ କଲେ । ଆଜିଠାରୁ ଭାରତର ଲୋକେ ଗୁଣବାନ୍ ହେଲେ, ଜାତି, ଧର୍ମ୍ମ ଓ ବର୍ଣ୍ଣନିର୍ବିଶେଷରେ ସରକାରୀ କାର୍ଯ୍ୟରେ ନିଯୁକ୍ତ ହୋଇପାରିବେ । କମ୍ପାନୀଙ୍କ ଶାସନକାଳରେ ଯାହାଙ୍କ ସଙ୍ଗରେ ଯେପରି ସନ୍ଧି କିମ୍ବା ବନ୍ଦୋବସ୍ତ ହୋଇଅଛି ତାହା ସେହିପରି ରହିବ । ସରକାର ବାହାଦୁର ପ୍ରଜାଙ୍କ ଧର୍ମ୍ମରେ ହସ୍ତକ୍ଷେପ କରିବେ ନାହିଁ । ଭାରତର ପୁରାତନ

ଜାତି, ନୀତି, ଆଚାର, ବ୍ୟବହାର ପ୍ରତି ସମ୍ମାନ ପ୍ରଦର୍ଶନ କରାଯିବ । ନ୍ୟାୟ ବ୍ରିଟିଶ୍‌ଶାସନର ମୂଳମନ୍ତ୍ର ହେବ । ଦେଶୀୟ ରାଜାମାନେ ଅପତ୍ୟହୀନ ହେଲେ ପୋଷ୍ୟପୁତ୍ର ଗ୍ରହଣ କରିପାରିବେ ।"

---

## ୨୮ଶ ଅଧ୍ୟାୟ ।

### ରାଜପ୍ରତିନିଧିମାନଙ୍କ ଅଧୀନରେ ଭାରତବର୍ଷ ।

ଲର୍ଡ଼ କାନିଙ୍ଗ୍—ପାର୍ଲିମେଣ୍ଟ ମହାସଭାର ଆଇନ ଅନୁସାରେ ଲର୍ଡ଼ କାନିଙ୍ଗ୍ ଭାରତର ପ୍ରଥମ ଭାଇସ୍‌ରୟ ହେଲେ (୧୮୫୮) । ସିପାହି-ବିଦ୍ରୋହପରେ ଶାନ୍ତିସ୍ଥାପନ କରିବାଲାଗି ସେ ଦୋଷୀମାନଙ୍କ ଉପରେ ଏତେ ଦୟା ପ୍ରକାଶ କରିଥିଲେ ଯେ, ତାହାଙ୍କୁ ଲୋକେ "ଦୟାଳୁ କାନିଙ୍ଗ୍" ଆଖ୍ୟା ଦେଇଥିଲେ । ବିଦ୍ରୋହ ଦମନ କରିବାରେ ସରକାରଙ୍କ ୩୪ କୋଟି ଟଙ୍କା ଋଣ ହୋଇପଡ଼ିଥିଲା । ଆଉ ସାମରିକ ବିଭାଗରେ ଏକ କୋଟି ଟଙ୍କା ଖରଚ ବଢ଼ିଥିଲା । ଏ ସମସ୍ତ ପୂରଣ କରିବା ସକାଶେ ବିଲାତରୁ ଜେମସ୍ ଉଇଲ୍‌ସନ୍ ନାମକ ଏକ ରାଜସ୍ୱସଚିବ ଭାରତକୁ ଆସିଥିଲେ । ସେ ଲୋକଙ୍କର ଆୟ ଉପରେ କର ବସାଇଥିଲେ, ଆଉ କାଗଜର ନୋଟ ଚଳାଇଥିଲେ । ୧୮୬୦ ରେ ଲର୍ଡ଼ ମେକଲେଙ୍କ ଦ୍ୱାରା ସଙ୍କଳିତ ଦଣ୍ଡବିଧି ଆଇନ ଜାରି ହୋଇଥିଲା । ୧୮୬୨ ରେ ପ୍ରତ୍ୟେକ ପ୍ରେସିଡେନ୍‌ସିରେ ସଦର ଅଦାଲତ ପରିବର୍ତ୍ତରେ ହାଇକୋର୍ଟ ସ୍ଥାପିତ ହୋଇଥିଲା ।

ଲର୍ଡ଼ ଏଲ୍‌ଗିନ୍—୧୮୬୨ ରେ ଲର୍ଡ଼ ଏଲ୍‌ଗିନ୍ ଭାରତକୁ ଭାଇସରୟ ହୋଇ ଆସିଥିଲେ । କିନ୍ତୁ ଅଳ୍ପଦିନପରେ ସେ ଏଠାରେ ପ୍ରାଣତ୍ୟାଗ

କଲେ (୧୮୬୩) । ନୂତନ ଭାଇସ୍‌ରୟ୍ ଆସିବା ପର୍ଯ୍ୟନ୍ତ ସର୍ ଵିଲିୟମ୍ ଡେନିସନ ଏକ୍‌ଟିଙ୍ଗ୍ ଭାଇସ୍‌ରୟ୍ ହୋଇଥିଲେ ।

ସର୍ ଜନ୍ ଲରେନ୍ସ—ଲରେନ୍ସ ୧୮୬୪ରେ ଭାରତକୁ ଆସିଥିଲେ । ସିପାହିବିଦ୍ରୋହ ସମୟରେ ସେ ପଞ୍ଜାବର ଶାସନକର୍ତ୍ତା ଥିଲେ । ଏହାଙ୍କ ଶାସନଗୁଣରେ ଶିଖମାନେ ବିଦ୍ରୋହୀ ହୋଇ ନ ଥିଲେ । ଏହାଙ୍କ ସମୟରେ ଭୁଟାନ ଯୁଦ୍ଧ ହୋଇଥିଲା । ଇଂରେଜମାନେ ଦ୍ୱାରପ୍ରଦେଶକୁ ନିଜରାଜ୍ୟରେ ଭୁକ୍ତ କରିଥିବାରୁ ଆଜିପର୍ଯ୍ୟନ୍ତ ଭୁଟାନରାଜାଙ୍କୁ ବାର୍ଷିକ କର ଦେଉଥିଲେ । ଏପରି ବନ୍ଦୋବସ୍ତ ହେଲେ ସୁଦ୍ଧା ଭୁଟାନିମାନେ ଅନେକ ସମୟରେ ଏ ପ୍ରଦେଶକୁ ଆସି ଲୁଟି କରୁଥିଲେ । ଲରେନ୍ସ ସେମାନଙ୍କୁ ବାରଣ କରି ଅକୃତକାର୍ଯ୍ୟ ହେଲେ । ଏଣୁ ଯୁଦ୍ଧଘୋଷଣା ହେଲା । ଫଳସ୍ୱରୂପ ଦ୍ୱାର ଇଂରେଜଦଖଲକୁ ଆସିଲା, ଇଂରେଜମାନଙ୍କର କରଦେବା ବନ୍ଦ ହେଲା ।

୧୮୬୬ରେ ଓଡ଼ିଶାରେ ଗୋଟିଏ ଭୟାନକ ଦୁର୍ଭିକ୍ଷ ହୋଇଥିଲା । ଏହାକୁ "ନଅଙ୍କ" ଦୁର୍ଭିକ୍ଷ କହନ୍ତି । ଏଥିରେ ପ୍ରାୟ ୬୦ ଲକ୍ଷ ଲୋକ ମରିଥିଲେ ।

୧୮୬୩ରେ ଆଫଗାନ ଅମୀର ଦୋସ୍ତମହମ୍ମଦଙ୍କର ମୃତ୍ୟୁ ହେଲା । ଅମୀରପଦଲାଗି ତାଙ୍କ ପୁତ୍ରମାନଙ୍କ ମଧ୍ୟରେ ବିବାଦ ଲାଗିଥିଲା । ଅବଶେଷରେ ଶେରଆଲି ନାମକ ଦୋସ୍ତମହମ୍ମଦଙ୍କର ଏକ ପୁତ୍ର ଅମୀର ହେବାରୁ ଲରେନ୍ସ ତାହା ସ୍ୱୀକାର କଲେ । ୧୮୬୯ରେ ଲରେନ୍ସ ଭାରତ ତ୍ୟାଗକଲେ ।

ଲର୍ଡ଼ ମେୟୋ—୧୮୬୯ରେ ସେ ଭାରତର ଭାଇସ୍‌ରୟ୍ ହୋଇ-

ଥିଲେ । ଅମ୍ବାଲାରେ ଏକ ଦରବାର କରି ସେ ଅମୀର ଶେରଅଲିଙ୍କୁ ଅଭ୍ୟର୍ଥନାପୂର୍ବକ ତାହାଙ୍କୁ ଆଫଗାନସ୍ଥାନର ଅମୀର ବୋଲି ସ୍ୱୀକାର କରିଥିଲେ ।

ଏହାଙ୍କ ସମୟରେ ମହାରାଣୀଙ୍କ ଦ୍ୱିତୀୟ ପୁତ୍ର ଡିଉକ ଅବ୍ ଏଡ଼ିନବର୍ଗ ଭାରତ ଦର୍ଶନ କରିବାକୁ ଆସିଥିଲେ (୧୮୬୯) । ୧୮୭୨ରେ ଲର୍ଡ଼ ମେୟୋ ରେଙ୍ଗୁନ ପରିଦର୍ଶନ କରିବାକୁ ଗଲେ । ଫେରିଆସିବା ସମୟରେ ଅଣ୍ଡେମାନ ଦ୍ୱୀପରେ ଏକ ମୁସଲମାନ ତାଙ୍କୁ ହତ୍ୟା କରିଥିଲା ।

ସେ କୃଷିବିଭାଗ ନାମରେ ଏକ ସରକାରୀ ବିଭାଗ ସ୍ଥାପନ କରିଥିଲେ । ସଡ଼କ, କେନାଲ ଏବଂ ରେଲୱେ ନିର୍ମାଣ କରି ପ୍ରଜାମାନଙ୍କର ଅନେକ ହିତକର କାର୍ଯ୍ୟ କରିଥିଲେ ।

ଲର୍ଡ଼ ନର୍ଥବ୍ରୁକ୍ ।—ଏ ୧୮୭୨ରେ ଭାଇସରୟ ହୋଇଥିଲେ । ଏହାଙ୍କ ସମୟରେ ବଙ୍ଗଦେଶରେ ଏକ ଦୁର୍ଭିକ୍ଷ ହୋଇଥିଲା, କିନ୍ତୁ ରାଜକର୍ମଚାରୀମାନଙ୍କ ଯତ୍ନରେ ଅଧିକ ଲୋକଙ୍କର ପ୍ରାଣ ବିନଷ୍ଟ ହୋଇ ନ ଥିଲା ।

୧୮୭୫ରେ ବଡ଼ୋଦାର ଗାଇକୋବାଡ଼ ଇଂରେଜ ରେସିଡେଣ୍ଟଙ୍କୁ ବିଷପ୍ରୟୋଗ କରିଥିବା ଅଭିଯୋଗରେ ଅଭିଯୁକ୍ତ ହୋଇ ସିଂହାସନଚ୍ୟୁତ ହୋଇଥିଲେ । ଇଂରେଜମାନେ ସେହି ବଂଶର ଆଉ ଏକ ଜଣଙ୍କୁ ସିଂହାସନ ପ୍ରଦାନ କଲେ ।

୧୮୭୫ ଖ୍ରୀଷ୍ଟାବ୍ଦରେ ଆମ୍ଭମାନଙ୍କର ସ୍ୱର୍ଗୀୟ ସମ୍ରାଟ୍, ତତ୍କାଳୀନ ପ୍ରିନ୍ସ ଅବ୍ ୱେଲସ୍, ଭାରତଭ୍ରମଣ କରିବାକୁ ଆସିଥିଲେ ।

ଏହାଙ୍କ ସମୟରେ ଅସାମପ୍ରଦେଶ ବଙ୍ଗଦେଶରୁ ବିଚ୍ଛିନ୍ନ ହୋଇ ଏକ ଚୀଫ୍‌କମିଶନରଙ୍କ ଅଧୀନରେ ରହିଲା ।

ଲର୍ଡ଼ ଲିଟନ ।—ଲର୍ଡ଼ ଲିଟନ୍ ୧୮୭୬ରେ ଭାରତର ଶାସନଭାର ଗ୍ରହଣ କଲେ । ୧୮୭୭ ଜାନୁଆରି ୧ ତାରିଖରେ ଲିଟନ୍ ଦିଲ୍ଲୀରେ ଏକ ବୃହତ୍ ଦରବାର କରିଥିଲେ । ଏହି ଦରବାରରେ ମହାରାଣୀ ଭିକ୍ଟୋରିଆ ଭାରତସାମ୍ରାଜ୍ୟର ସମ୍ରାଜ୍ଞୀଉପାଧି ଗ୍ରହଣ କରିଥିବାର ଘୋଷଣା କରାଯାଇଥିଲା ।

ଏହି ଦରବାର ସମୟରେ ଦାକ୍ଷିଣାତ୍ୟରେ ଭୟାନକ ଦୁର୍ଭିକ୍ଷ ଉପସ୍ଥିତ ହୋଇଥିଲା । ସରକାର ବାହାଦୁର ଦୁର୍ଭିକ୍ଷ ନିବାରଣ ପାଇଁ ପ୍ରାୟ ୧୮ କୋଟି ଟଙ୍କା ବ୍ୟୟ କଲେ ସୁଦ୍ଧା ପ୍ରାୟ ୫୦ ଲକ୍ଷ ଲୋକ ନଷ୍ଟ ହୋଇଥିଲେ ।

ଦ୍ୱିତୀୟ ଅଫଗାନସମର ।—ଶେରଅଲି ରୁଷୀୟମାନଙ୍କ ସହ ଷଡ଼ଯନ୍ତ୍ର କରି ରୁଷୀୟଦୂତଙ୍କୁ ସମାଦରେ ଗ୍ରହଣ କରିଥିଲେ ଏବଂ ଇଂରେଜ ଦୂତଙ୍କୁ ଦେଶମଧ୍ୟରେ ପ୍ରବେଶ କରିବାକୁ ଦେଇ ନ ଥିଲେ । ତହୁଁ ଲିଟନ୍ ଶେରଅଲିଙ୍କ ବିରୁଦ୍ଧେ ଯୁଦ୍ଧଘୋଷଣା କଲେ । ୧୮୭୮ ରେ ଶେରଅଲି ତୁର୍କିସ୍ଥାନକୁ ପଳାୟନ କଲେ ଏବଂ ଅଳ୍ପଦିନ ପରେ ସେଠାରେ ପ୍ରାଣତ୍ୟାଗ କଲେ । ଶେରଅଲିଙ୍କ ପୁଏ ୟାକୁବ୍‌ଖାଁ ଅମୀର ହୋଇ ଇଂରେଜମାନଙ୍କ ସଙ୍ଗରେ ସନ୍ଧି କଲେ । ୟାକୁବ୍‌ଖାଁ କାବୁଲରେ ଜଣେ ଇଂରେଜ ରେସିଡେଣ୍ଟ ରଖିବାକୁ ସମ୍ମତ ହେଲେ । କେତେକ ମାସପରେ କାବୁଲ୍‌ବାସୀମାନେ ଉକ୍ତ ରେସିଡେଣ୍ଟ ଓ ତାହାଙ୍କ କର୍ମ୍ମଚାରୀମାନଙ୍କୁ ହତ୍ୟାକଲେ । ପୁଣି ଯୁଦ୍ଧ ଆରମ୍ଭ ହେଲା । ୟାକୁବ୍‌ଖାଁଙ୍କୁ ସିଂହାସନଚ୍ୟୁତ କରାଯାଇ ଭାରତକୁ ଅଣାହେଲା । ଇଂରେଜ ସେନାପତି ସର୍ ଫ୍ରେଡ୍ରେରିକ୍

ରବର୍ଟ୍‌ସ୍ ଏକଦଳ ସୈନ୍ୟ ନେଇ କାବୁଲରେ ରହିଲେ । ଏହି ସମୟରେ ବିଲାତରେ ମନ୍ତ୍ରିଦଳର ପରିବର୍ତ୍ତନ ହେବାରୁ ଲିଟନ୍ ୧୮୮୦ ରେ କାର୍ଯ୍ୟରୁ ଇସ୍ତଫା ଦେଲେ ।

ଏହାଙ୍କ ସମୟରେ ମୁଦ୍ରାଯନ୍ତ୍ର ସ୍ୱାଧୀନତା ହରାଇଥିଲା । ଅସ୍ତ୍ରବ୍ୟବହାର-ନିଷେଧବିଷୟକ ଆଇନ ପ୍ରଚଳିତ ହୋଇଥିଲା ।

ଲର୍ଡ଼ ରିପନ୍ ।—ଲର୍ଡ଼ ରିପନ୍ ୧୮୮୦ ରେ ଭାଇସ୍‌ରୟ୍ ହେଲେ । ୟାକୁବ୍‌ଖାଁଙ୍କ ଭାଇ ୟାୟୁବ୍‌ଖାଁ ଇଂରେଜମାନଙ୍କ ସହ ଶତ୍ରୁତାଚରଣ କରି ଏକଦଳ ଇଂରେଜସୈନ୍ୟଙ୍କୁ ପରାସ୍ତ କରିଥିଲେ । କିନ୍ତୁ ୧୮୮୦ ସେପ୍ଟେମ୍ବର ମାସରେ ସେ ଇଂରେଜସେନାପତି ରବର୍ଟ୍‌ସ୍‌ଙ୍କ ଦ୍ୱାରା ପରାଜିତ ହୋଇ ପାରସ୍ୟକୁ ପଳାୟନ କଲେ । ଇଂରେଜମାନେ ଶେରଆଲିଙ୍କ ଜ୍ୟେଷ୍ଠ ଭ୍ରାତାଙ୍କ ଜ୍ୟେଷ୍ଠ ପୁତ୍ର ଅବଦୁରରହିମାନଙ୍କୁ ଅଫଗାନସିଂହାସନରେ ବସାଇଥିଲେ (୧୮୮୦) । ୧୮୮୧ ରେ ଇଂରେଜସୈନ୍ୟ ଆଫଗାନିସ୍ଥାନରୁ ଫେରି ଆସିଥିଲେ ।



ଲର୍ଡ଼ ରିପନ୍ ।

୧୮୮୨ ରେ ରିପନ୍ ମୁଦ୍ରାଯନ୍ତ୍ରକୁ ପୁନଶ୍ଚ ସ୍ୱାଧୀନତା ଦେଇଥିଲେ ।

ଭାରତବାସୀଙ୍କୁ ଏକପ୍ରକାର ଆତ୍ମଶାସନର ଭାର ଦେବାର ଅଲୋଚନା ମଧ୍ୟ ଏହାଙ୍କ ସମୟରେ ହୋଇଥିଲା । ଏହାଙ୍କ ସମୟରେ କଲିକତାରେ ଗୋଟିଏ ଆନ୍ତର୍ଜାତିକ ପ୍ରଦର୍ଶନୀ ହୋଇଥିଲା । ଲର୍ଡ଼ ରିପନ୍ ପ୍ରଜାମାନଙ୍କୁ ବଡ଼ ଭଲପାଉଥିଲେ ଏବଂ ସେମାନଙ୍କର ହିତଲାଗି ସର୍ବଦା ଚେଷ୍ଟା କରୁଥିଲେ ।

୧୮୮୪ ରେ ସେ ବିଲାତକୁ ଗଲେ । ତାହାଙ୍କ ବିଲାତଗମନକାଳରେ ଭାରତବାସୀମାନେ ଗଭୀର ଶୋକ ପ୍ରକାଶ କରିଥିଲେ ।

ଲର୍ଡ଼ ଡଫରିନ୍ ।—୧୮୮୪ରେ ଲର୍ଡ଼ ଡଫରିନ୍ ଶାସନଭାର ଗ୍ରହଣ କରିଥିଲେ । ଏହାଙ୍କ ସମୟରେ ଆତ୍ମଶାସନଆଇନ ଚଳିଥିଲା ଅଥାତ୍ ବଡ଼ ବଡ଼ ନଗର ଏବଂ ପ୍ରତ୍ୟେକ ଜିଲାରେ ଗୋଟିଏ ଗୋଟିଏ ସଭା ସ୍ଥାପିତ ହୋଇ ତହିଁରେ ଦେଶୀୟ ଲୋକମାନେ ସଭ୍ୟ ହେଲେ । ସେହି-ସବୁ ସଭାହସ୍ତରେ ନଗର ଓ ଜିଲାର ସ୍ୱାସ୍ଥ୍ୟରକ୍ଷା ଏବଂ ପଥ ଓ ଘାଟର ନିର୍ମାଣ-ଭାର ଦିଆଯାଇଥିଲା ।

୧୮୮୫ରେ ଡଫରିନ୍ ରାୱଲପିଣ୍ଡିରେ ଏକ ଦରବାର କରି ଅମୀର ଅବଦୁରରହିମାନଙ୍କୁ ସମ୍ବର୍ଦ୍ଧନା କରିଥିଲେ ।

ତୃତୀୟ ବ୍ରହ୍ମସମର ।—ବ୍ରହ୍ମରାଜ ଥିବ ଇଂରେଜବଣିକ୍‌ମାନଙ୍କ ଉପରେ ଅତ୍ୟାଚାର କରିବାକୁ ଆରମ୍ଭ କଲେ । ସେ ବାରଣ ନ ମାନିବାରୁ ଡଫରିନ୍ ଯୁଦ୍ଧଘୋଷଣା କଲେ । ଇଂରେଜସୈନ୍ୟ ବ୍ରହ୍ମରାଜଧାନୀ ମାନ୍ଦାଲେରେ ପହୁଞ୍ଚିବାମାତ୍ର ଥିବ ଆତ୍ମସମର୍ପଣ କଲେ । ଥିବ ବନ୍ଦୀ ହୋଇ ଭାରତକୁ ଅସିଲେ । ୧୮୮୬ ଜାନୁଆରି ୧ ତାରିଖରେ ବ୍ରହ୍ମଦେଶ ଭାରତସାମ୍ରାଜ୍ୟଭୁକ୍ତ ହେଲା ।

୧୮୮୭ରେ ଭାରତସମ୍ରାଜ୍ଞୀ ଭିକ୍ଟୋରିଆଙ୍କ ୫୦ ବର୍ଷ ରାଜତ୍ୱ ପୂର୍ଣ୍ଣ ହୋଇଥିବାରୁ ଜୁବିଲି ଉତ୍ସବ ହୋଇଥିଲା । ୧୮୮୮ରେ ଡଫରିନ୍ ବିଲାତଗମନ କରିଥିଲେ ।

ଲର୍ଡ଼ ଲାନ୍ସଡାଉନ ।—୧୮୮୮ ମସିହା ଡିସେମ୍ବରମାସରେ ଲାନ୍ସ-ଡାଉନ ଭାରତଶାସନଭାର ଗ୍ରହଣ କରିଥିଲେ । ୧୮୯୧ରେ ମନିପୁର ରାଜ୍ୟରେ ଇଂରେଜ ରେସିଡେଣ୍ଟ, ଆସାମର ଚୀଫକମିଶନର ପ୍ରଭୃତି କେତେକ ଇଂରେଜ କର୍ମଚାରୀ ନିହତ ହେବାରୁ ଲାନ୍ସଡାଉନ ମନିପୁର-ରାଜାଙ୍କୁ ଦ୍ୱୀପାନ୍ତରିତ ଓ ତାହାଙ୍କ ଭ୍ରାତାଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କଲେ । ରାଜବଂଶର ଏକ ବାଳକ ମନିପୁରରେ ରାଜା ହେଲେ ।

ଲର୍ଡ଼ ଏଲ୍‌ଗିନ୍ ।—୧୮୯୪ରେ ଏଲ୍‌ଗିନ୍ ଭାଇସ୍‌ରୟ ହେଲେ । ଏ ଦ୍ୱିତୀୟ ଭାଇସ୍‌ରୟ ଏଲ୍‌ଗିନଙ୍କ ପୁତ୍ର । ୧୮୯୬ରେ ଭାରତରେ ପ୍ଲେଗରୋଗ ଦେଖାଦେଲା । ପ୍ଲେଗ ଭାରତରୁ ବର୍ତ୍ତମାନପର୍ଯ୍ୟନ୍ତ ଯାଇ ନାହିଁ । ଏହି ପ୍ଲେଗରେ ବହୁ-ସଂଖ୍ୟକ ଲୋକ ନଷ୍ଟ ହୋଇଅଛନ୍ତି ଓ ହେଉଅଛନ୍ତି । ୧୮୯୭ରେ ଭାରତବ୍ୟାପୀ ଦୁର୍ଭିକ୍ଷ ହେଲା । ସେହି ଅବ୍ଦରେ ଭୂମିକମ୍ପ ମଧ୍ୟ ହୋଇଥିଲା । ଏହି ଦୁଇ ଘଟନାରେ ବହୁସଂଖ୍ୟକ ଲୋକ ନଷ୍ଟ ହୋଇଥିଲେ ।

୧୮୯୭ରେ ମହାରାଣୀ ଭିକ୍ଟୋରିଆଙ୍କ ୬୦ ବର୍ଷ ରାଜତ୍ୱ ଉପଲକ୍ଷେ ହୀରକଜୁବିଲିଉତ୍ସବ ହୋଇଥିଲା ।

ସେହି ଅବ୍ଦରେ ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶରେ ଆଫ୍ରିଦି ପ୍ରଭୃତି ଜାତିମାନେ ଉପଦ୍ରବ ଆରମ୍ଭ କରିବାରୁ ସେମାନଙ୍କ ବିରୁଦ୍ଧେ ସୈନ୍ୟ

ପ୍ରେରଣ କରାଯାଇଥିଲା । ଏହି ଜାତିମାନେ ପରାଜିତ ହୋଇ ବଶ୍ୟତା ସ୍ୱୀକାର କରିଥିଲେ । ୧୮୯୯ରେ ଏଲ୍‌ଗିନ୍ ବିଲାତ ଗମନ କଲେ ।



ଲର୍ଡ଼ କର୍ଜ୍ଜନ ।

ଲର୍ଡ଼ କର୍ଜ୍ଜନ ।—୧୮୯୯ରେ ସେ ଶାସନଭାର ଗ୍ରହଣ କରିଥିଲେ । ୧୯୦୧ ଜାନୁଆରି ୨୨ ତାରିଖରେ ରାଜରାଜେଶ୍ୱରୀ ଭିକ୍ଟୋରିଆ ୬୩ ବର୍ଷ ରାଜତ୍ୱ କରି ସ୍ୱର୍ଗାରୋହଣ କରିବାରୁ ତାହାଙ୍କ ଜ୍ୟେଷ୍ଠ ପୁତ୍ର ସପ୍ତମ ଏଡୱାର୍ଡ଼ ନାମ ଧାରଣ କରି ଭାରତର ସମ୍ରାଟ୍ ହୋଇଥିଲେ । ଏଥିଲାଗି ଦିଲ୍ଲୀରେ ଏକ ଦରବାର ଓ ଭାରତରେ ଏକ ଉତ୍ସବ ହୋଇଥିଲା । ୧୯୦୫ରେ ଆମ୍ଭମାନଙ୍କ ବର୍ତ୍ତମାନ ସମ୍ରାଟ୍ ୫ମ ଜର୍ଜ (ତତ୍କାଳୀନ ପ୍ରିନ୍ସ ଅଵ୍ ୱେଲସ୍) ଭାରତ ଭ୍ରମଣ କରିବାଲାଗି ସସ୍ତ୍ରୀକ ଆଗମନ କରିଥିଲେ ।

ଏହି ଅବଦରେ ବଙ୍ଗଳାର କେତେକ ଅଂଶ ଆସାମସହିତ ଯୋଗ କରାଯାଇ ପୂର୍ବବଙ୍ଗ ଓ ଆସାମ ଲାଗି ଆଉ ଗୋଟିଏ ନୂତନ ଲେଫ୍ଟେନେଣ୍ଟଗବର୍ଣ୍ଣରି ପଦର ସୃଷ୍ଟି ହୋଇଥିଲା । ସମ୍ବଲପୁର ମଧ୍ୟପ୍ରଦେଶରୁ ବିଚ୍ଛିନ୍ନ ହୋଇ ଓଡ଼ିଶାସଙ୍ଗେ ମିଳିତ ହୋଇଥିଲା । ଲର୍ଡ଼ କର୍ଜ୍ଜନ ସବୁ ବିଭାଗରେ ହସ୍ତକ୍ଷେପ କରି ସଂସ୍କାର କରିଥିଲେ । ତନ୍ମଧ୍ୟରେ ବଣ-

ବିଦ୍ୟାଳୟ ମାନଙ୍କର ଆଇନ-ସଂସ୍କାର ଏକତମ । ସେ ୧୯୦୫ ରେ ବିଲାତ ଗମନ କରିଥିଲେ ।



ଲର୍ଡ଼ ମିଣ୍ଟୋ ।

ଲର୍ଡ଼ ମିଣ୍ଟୋ । ୧୯୦୫-୧୦ । ୧୯୦୫ ଅବଦରେ ଲର୍ଡ଼ ମିଣ୍ଟୋ ଭାରତର ଶାସନଭାର ଗ୍ରହଣ କରିଥିଲେ । ଦେଶମଧ୍ୟରେ ଶାନ୍ତି-ସ୍ଥାପନ ଏବଂ ବ୍ୟବସ୍ଥାପକ ସଭାମାନଙ୍କର ସଂସ୍କାର ଏହି ମହାତ୍ମାଙ୍କ ରାଜତ୍ୱର ପ୍ରଧାନ ଘଟନା ।

ବ୍ୟବସ୍ଥାପକ ସଭାମାନଙ୍କର ସଂସ୍କାର (୧୯୧୦)—ଏହି ସଂସ୍କାର ଲର୍ଡ଼ ମିଣ୍ଟୋଙ୍କ ରାଜତ୍ୱକାଳର ଗୋଟିଏ ପ୍ରଧାନ ଘଟନା । ଏତଦ୍ୱାରା ଭାରତ-ବାସୀମାନଙ୍କୁ ସମୁଦାୟ ଭାରତବର୍ଷ ଏବଂ ତାହାର ବିଭିନ୍ନ ପ୍ରଦେଶମାନଙ୍କ ନିମନ୍ତେ ଆଇନ ଓ ବାର୍ଷିକ ଆୟବ୍ୟୟର ହିସାବ ପ୍ରସ୍ତୁତ କରିବାଲାଗି ପୂର୍ବାପେକ୍ଷା ଅଧିକତର ଅଧିକାର ପ୍ରଦତ୍ତ ହୋଇଅଛି ।

ଯେଉଁମାନଙ୍କ ଲାଗି ଆଇନ ପ୍ରସ୍ତୁତ ହୁଏ ଏବଂ ଯେଉଁମାନଙ୍କ ପ୍ରଦତ୍ତ ରାଜସ୍ୱରୁ ଶାସନକାର୍ଯ୍ୟର ଖର୍ଚ୍ଚ ଚଳେ, ସେମାନଙ୍କର ମତାମତ ଗ୍ରହଣ ନ କରି ଆଇନ ଓ ଆୟବ୍ୟୟର ହିସାବ ପ୍ରସ୍ତୁତ କରିବା ନ୍ୟାୟସଙ୍ଗତ ନୁହେ । ପ୍ରତ୍ୟେକ ପ୍ରଜାର ମତାମତ ଗ୍ରହଣ କରିବା ରାଜାଙ୍କ ପକ୍ଷରେ ସୁବିଧାଜନକ ନୁହେ । ସେହି ହେତୁରୁ ଇଂଲଣ୍ଡ ପ୍ରଭୃତି ସବୁ ସଭ୍ୟ-

ଦେଶରେ ବିଧି ଅଛି ଯେ ରାଜା କେତେଗୁଡ଼ିଏ ନିୟମ ବାନ୍ଧିଦିଅନ୍ତି । ସେହି ନିୟମ ଅନୁସାରେ ବଡ଼ ବଡ଼ ନଗର ଓ ଜିଲ୍ଲାମାନଙ୍କର ପ୍ରଜା-ମାନେ କେତେଗୁଡ଼ିଏ ପ୍ରତିନିଧି ବାଛନ୍ତି । ସେହି ପ୍ରତିନିଧିମାନେ ରାଜାଙ୍କ ବ୍ୟବସ୍ଥାପକ ସଭାରେ ଆଇନ ଓ ବାର୍ଷିକ ଆୟବ୍ୟୟର ହିସାବ ପ୍ରସ୍ତୁତ ହେଲାବେଳେ ମତାମତ ଦିଅନ୍ତି । ଲର୍ଡ଼ ଲାନ୍ସଡାଉନ୍ ଯେତେବେଳେ ଭାଇସରୟ ଥିଲେ ତେତେବେଳେ ୧୮୯୧ ରେ ପ୍ରଜାମାନଙ୍କୁ ଏହି ଅଧିକାର କେତେକ ପରିମାଣରେ ଦିଆଯାଇଥିଲା ସତ୍ୟ, ମାତ୍ର ତାହା ତେତେ ସନ୍ତୋଷଜନକ ହୋଇ ନ ଥିଲା ; ସବୁ ଶ୍ରେଣୀର ପ୍ରଜା ନିଜ ନିଜ ପ୍ରତିନିଧି ନିର୍ବାଚନ କରି ପାରୁ ନ ଥିଲେ । ଆହୁରି ମଧ୍ୟ ବ୍ୟବସ୍ଥାପକ ସଭାମାନଙ୍କରେ ପ୍ରଜା-ନିର୍ବାଚିତ ବେସରକାରୀ ସଭ୍ୟମାନଙ୍କ ସଂଖ୍ୟା ସରକାରୀ ସଭ୍ୟମାନଙ୍କ ସଂଖ୍ୟାଠାରୁ ଅଳ୍ପତର ଥିଲା । ସେହି ହେତୁରୁ ଆମ୍ଭମାନଙ୍କର ଭୂତପୂର୍ବ ସମ୍ରାଟ୍ ସପ୍ତମ ଏଡ଼ୱାର୍ଡ଼ଙ୍କ ଆଦେଶାନୁସାରେ ତତ୍କାଳୀନ ଭାରତସଚିବ ଲର୍ଡ଼ ମର୍ଲେ ପାର୍ଲିମେଣ୍ଟରେ ୧୯୦୯ ରେ ଭାରତୀୟ ବ୍ୟବସ୍ଥାପକ-ସଭାସଂସ୍କାର ବିଷୟରେ ଏକ ଆଇନ ଉପ-ସ୍ଥାପିତ କରାଇଥିଲେ । ତାହା ମଞ୍ଜୁର ହେବାରୁ ନିମ୍ନଲିଖିତ ସଂସ୍କାରମାନ ପ୍ରବର୍ତ୍ତିତ ହେଲା ।—

ପ୍ରାଦେଶିକ ବ୍ୟବସ୍ଥାପକ ସଭାମାନଙ୍କରେ ବେସରକାରୀ ସଭ୍ୟମାନଙ୍କ ସଂଖ୍ୟା ସରକାରୀ ସଭ୍ୟମାନଙ୍କ ସଂଖ୍ୟାଠାରୁ ଅଧିକ କରାଗଲା । ବିଭିନ୍ନ ପ୍ରଦେଶର ବଡ଼ ବଡ଼ ଜମିଦାର ଏବଂ ମୁସଲମାନସମ୍ପ୍ରଦାୟ ନିଜ ନିଜ ପ୍ରତିନିଧି ନିର୍ବାଚନ କରିବାର କ୍ଷମତା ପାଇଲେ । ଜିଲ୍ଲା ବୋର୍ଡ଼ ଓ ମ୍ୟୁନିସିପାଲିଟିର ବେସରକାରୀ ସଭ୍ୟମାନେ ଅଧିକସଂଖ୍ୟକ ପ୍ରତିନିଧି ନିର୍ବାଚନ କରିବାର କ୍ଷମତା ପାଇଲେ । ଯେବେ କେହି ସରକାରୀ କର୍ମଚାରୀ ଜିଲ୍ଲା ବୋର୍ଡ଼ ଓ ମ୍ୟୁନିସିପାଲିଟିର ସଭ୍ୟ ଥାନ୍ତି, ସେମାନେ ବ୍ୟବ-

ସ୍ଥାପକ ସଭା ନିମନ୍ତେ ସଭ୍ୟନିର୍ବାଚନ ହେଲାବେଳେ ମତ ଦେଇ ନ ପାରିବାର ବିଧି ହେଲା । ବିଶ୍ୱବିଦ୍ୟାଳୟ ଏବଂ ବଣିକ୍ ସଭାମାନେ ମଧ୍ୟ ବ୍ୟବସ୍ଥାପକ ସଭା ନିମନ୍ତେ ନିଜ ନିଜ ସଭ୍ୟ-ନିର୍ବାଚନ କରିପାରିବାର କ୍ଷମତା ପାଇଲେ ।

ପୂର୍ବେ ଭାରତୀୟ ବ୍ୟବସ୍ଥାପକ ସଭାର ସଭାପତି ଭାଇସରୟଙ୍କୁ ଧରି ଜଣ ୨୪ ଣ ସଭ୍ୟ ଥିଲେ । ତନ୍ମଧ୍ୟରୁ ସରକାରୀ ସଭ୍ୟ ୧୭ ଜଣ, ବେ-ସରକାରୀ ସଭ୍ୟ ୭ ଜଣ । ବର୍ତ୍ତମାନ ନିୟମ ହେଲା ଯେ ଭାଇସରୟଙ୍କୁ ଧରି ତହିଁରେ ୬୮ ଜଣ ସଭ୍ୟ ରହିବେ, ତନ୍ମଧ୍ୟରୁ ସରକାରୀ ସଭ୍ୟ ହେବେ ୩୬ ଜଣ ଏବଂ ବେସରକାରୀ ସଭ୍ୟ ହେବେ ୩୨ ଜଣ ।

ବଙ୍ଗୀୟ ବ୍ୟବସ୍ଥାପକ ସଭାର ସଭାପତି ଲେଫ୍ଟେନାଣ୍ଟଙ୍କୁ ଧରି ପୂର୍ବେ ୧୧ ଜଣ ସରକାରୀ ଏବଂ ୧୦ ଜଣ ବେସରକାରୀ ସଭ୍ୟ ଥିଲେ । ବର୍ତ୍ତ-ମାନ ନିୟମ ଅନୁସାରେ ଲେଫ୍ଟେନାଣ୍ଟଙ୍କୁ ଧରି ସରକାରୀ ସଭ୍ୟ ହେଲେ ୧୮ କିମ୍ବା ୨୦ ଜଣ, ଏବଂ ବେସରକାରୀ ସଭ୍ୟ ହେଲେ ୩୧ କିମ୍ବା ୩୩ ଜଣ । ମୋଟରେ ସଭ୍ୟସଂଖ୍ୟା ହେଲା ୫୧ ଜଣ ।

ବଙ୍ଗଦେଶପରି ମାନ୍ଦ୍ରାଜ, ବମ୍ବେଇ, ଯୁକ୍ତପ୍ରଦେଶ, ପୂର୍ବବଙ୍ଗ ଏବଂ ଆସାମ, ପଞ୍ଜାବ ଓ ବ୍ରହ୍ମଦେଶରେ ମଧ୍ୟ ଏକ ଏକ ବ୍ୟବସ୍ଥାପକ ସଭା ଅଛି । ଏହି ପ୍ରତ୍ୟେକ ବ୍ୟବସ୍ଥାପକ ସଭାରେ ବେସରକାରୀ ସଭ୍ୟ-ମାନଙ୍କ ସଂଖ୍ୟା ସରକାରୀ ସଭ୍ୟମାନଙ୍କ ସଂଖ୍ୟାଠାରୁ ଅଧିକ କରାଯାଇ-ଅଛି ।

ଉପରେ ଯାହା ଲେଖାଗଲା ତାହା ବ୍ୟବସ୍ଥାପକ ସଭାମାନଙ୍କର ଏକ ସଂସ୍କାରମାତ୍ର । ଏଥିରୁ ତୁମ୍ଭେମାନେ ଅନୁମାନ କରିପାରିବ ଯେ ଯୋଗ୍ୟତା ଦେଖାଇଲେ କାଳକ୍ରମେ ଭାରତୀୟ ବ୍ରିଟିଶ ପ୍ରଜାମାନେ ନିଜ

ଦେଶଶାସନରେ ଆହୁରି ଅଧିକ କ୍ଷମତା ଲାଭ କରିପାରନ୍ତି । ଇଂରେଜ ଗବର୍ଣ୍ଣମେଣ୍ଟଙ୍କର ଏପ୍ରକାର ସୁବିଚାର ଲାଗି ଆମ୍ଭମାନଙ୍କର ସର୍ବଦା କୃତଜ୍ଞ ରହିବା ଉଚିତ ।

ଲର୍ଡ଼ ହାର୍ଡ଼ିଞ୍ଜି—୧୯୧୦ ଅବ୍ଦରୁ ଲର୍ଡ଼ ହାର୍ଡ଼ିଞ୍ଜି ଭାରତର ଶାସନଭାର ଗ୍ରହଣ କରିଅଛନ୍ତି । ଏହି ମହାତ୍ମା ବର୍ତ୍ତମାନ ଆମ୍ଭମାନଙ୍କର ବଡ଼ଲାଟ ।

---

## ୨୯ଶ ଅଧ୍ୟାୟ ।

### ଇଂରେଜବାହାଦୁରଙ୍କ ଅମଲରେ ଭାରତର ଶ୍ରୀବୃଦ୍ଧି, ଓ ଇଂରେଜ ଶାସନପ୍ରଣାଳୀ ।

ଭାରତରେ ଶାନ୍ତି:—ଇଂରେଜବାହାଦୁର ଆମ୍ଭମାନଙ୍କର ଯେତେ ପ୍ରକାର ମଙ୍ଗଳ ସାଧନ କରିଅଛନ୍ତି, ତନ୍ମଧ୍ୟରେ ସ୍ଥାୟୀ ଶାନ୍ତିପ୍ରଦାନହିଁ ମହତ୍ । ତୁମ୍ଭମାନଙ୍କର ମନେ ରଖିବା ଉଚିତ ଯେ, ଦୃଢ଼ ଶାସନବ୍ୟତୀତ ଶାନ୍ତି-ସ୍ଥାପନ ସମ୍ଭବପର ନୁହେ, ଏବଂ ସାମ୍ରାଜ୍ୟ ଅତ୍ୟନ୍ତ ପରାକ୍ରମଶାଳୀ ନ ହେଲେ ଦୃଢ଼ ଶାସନ ସମ୍ଭବପର ନୁହେ । ତୁମ୍ଭେମାନେ ପଢ଼ିଆସିଅଛ ଯେ କି ହିନ୍ଦୁ, କି ପଠାଣ, କି ମୋଗଲ କାହାରି ଶାସନକାଳରେ ଭାରତ ସ୍ଥାୟୀ ଶାନ୍ତି ଭୋଗ କରିପାରି ନ ଥିଲା । ଏଥିରୁ ତୁମ୍ଭେମାନେ କଣ ଅନୁମାନ କରିପାରୁଅଛ? ଇଂରେଜବାହାଦୁରଙ୍କ ସାମ୍ରାଜ୍ୟ କି ହିନ୍ଦୁ, କି ପଠାଣ, କି ମୋଗଲ ସମସ୍ତ ସାମ୍ରାଜ୍ୟଠାରୁ ବଳୀୟାନ୍ । ପୂର୍ବ ରାଜତ୍ୱ-ମାନଙ୍କ ବିଷୟ ପାଠ କରି ତୁମ୍ଭେମାନେ କଣ ଦେଖିଅଛ? ରାଜାମାନଙ୍କ ମଧ୍ୟରେ ଶତ୍ରୁତା, ଯୁଦ୍ଧ ବିଗ୍ରହ, ପ୍ରାଦେଶିକ ଶାସନକର୍ତ୍ତାମାନଙ୍କର ବିଦ୍ରୋହ, ଗୃହବିବାଦ ପ୍ରଭୃତି ହେତୁରୁ ଭାରତରେ କେବେହେଁ ଶାନ୍ତି ବିରାଜ

ପାରୁ ନ ଥିଲ । ବର୍ତ୍ତମାନ ଇଂରେଜବାହାଦୁରଙ୍କ ଶାସନପ୍ରଭାବରୁ ଏ ସମସ୍ତ ଲୋପ ପାଇଅଛି । ଶାନ୍ତି ବିରାଜମାନ ହେବାରୁ ଏସମସ୍ତ ସ୍ୱପ୍ନବତ୍ ପ୍ରତୀୟମାନ ହେଉଅଛି । ବିଦେଶୀୟ ରାଜାମାନେ ଇଂରେଜବାହାଦୁରଙ୍କୁ ଏପରି ମାନ୍ୟ ଓ ଭୟ କରନ୍ତି ଯେ ଅମ୍ଭେମାନେ ମାମୁଦ, ତୈମୁର ଓ ନାଦୀରସାହ ପ୍ରଭୃତିଙ୍କ ପରି ଆକ୍ରମଣକାରୀମାନଙ୍କୁ ଭାରତରେ ଆଉ କେବେହେଁ ଦେଖିବା ନାହିଁ । ପୂର୍ବକାଳର ଡକାୟୃତି ଓ ହତ୍ୟାକାଣ୍ଡ ଗଲଣି । ଆମ୍ଭମାନଙ୍କର ଶରୀର ଓ ସମ୍ପତ୍ତି ବର୍ତ୍ତମାନ ସମ୍ପୂର୍ଣ୍ଣରୂପେ ନିରାପଦ । ଠଗ, ପିଣ୍ଡାରି, ବର୍ଗିମାନଙ୍କର ଦିନ ଗଲଣି । ପାହାଡ଼ିୟା ଲୋକମାନଙ୍କର ଉତ୍ପାତ ଆଉ ଲେଶମାତ୍ର ନାହିଁ । ଯେଉଁ ବର୍ଗିମାନଙ୍କର କଥା କହି ପିତାମାତା ସନ୍ତାନମାନଙ୍କୁ ଡରାଉଥିଲେ ସେମାନେ ଆଉ ଦେଖିବାକୁ ମିଳୁଅଛନ୍ତି କି?

ଅନ୍ତର୍ବାଣିଜ୍ୟ ଓ ଶ୍ରମଜାତ ଦ୍ରବ୍ୟ ।—ଭାରତରେ ଶାନ୍ତି ସ୍ଥାପିତ ହେବାରୁ ଅନ୍ତର୍ବାଣିଜ୍ୟ ଓ ଶ୍ରମଜାତ ଦ୍ରବ୍ୟର ଉନ୍ନତି ବହୁପରିମାଣରେ ସାଧିତ ହୋଇଅଛି । ଇଉରୋପରୁ କଳପ୍ରସ୍ତୁତ ଦ୍ରବ୍ୟ ଆସିବାରୁ ଭାରତର ହସ୍ତପ୍ରସ୍ତୁତ ଦ୍ରବ୍ୟର ଅବନତି ଘଟିଅଛି ସତ୍ୟ, ମାତ୍ର ଇଂରେଜମାନଙ୍କର ଉଦ୍ୟମ ଓ ମୂଳଧନ ଦ୍ୱାରା ଏ ଦେଶର ଯେଉଁ ଦ୍ରବ୍ୟସମୂହ କେବେହେଁ ମନୁଷ୍ୟବ୍ୟବହାରରେ ଲାଗି ନ ଥାନ୍ତା ତାହା ମନୁଷ୍ୟର ବ୍ୟବହାରରେ ଲାଗିଅଛି । ଏ ଦେଶର ପଥରକୋଇଲା ଇଂରେଜ ମୂଳଧନ ଓ ଉଦ୍ୟମ ବ୍ୟତୀତ କେବେହେଁ ମନୁଷ୍ୟର ବ୍ୟବହାରରେ ଲାଗି ନ ଥାନ୍ତା । ତୁମ୍ଭେମାନେ ଯେଉଁ ଝୋଟକଳ ଓ ଲୁଗାକଳ କଥା ଶୁଣ, ସେଗୁଡ଼ିକ କେବଳ ଇଂରେଜମାନଙ୍କ ଉଦ୍ୟମ ଓ ମୂଳଧନରେ ଏ ଦେଶରେ ସ୍ଥାପିତ ହୋଇଅଛି । ତଦ୍ଦ୍ୱାରା ଏ ଦେଶରେ ଲକ୍ଷ ଲକ୍ଷ ଲୋକ ପ୍ରତିପୋଷିତ ହେଉଅଛନ୍ତି । ଚା ଗୋଟିଏ ଫସଲ, ତାହା

ଅନେକ କୁଲିଙ୍କୁ ପୋଷୁଅଛି, ମାତ୍ର ଇଂରେଜମାନେହିଁ ଏ ଦେଶରେ ଏହି ଫସଲର ପ୍ରବର୍ତ୍ତକ ।

ଇଂରେଜବାହାଦୁରଙ୍କ ଅମଳରେ ରେଲ ଓ ତାରଡାକ ଦ୍ୱାରା ଦେଶବିଦେଶକୁ ଯିବାଆସିବା ଓ ଖବରଦେବାର ଅତ୍ୟନ୍ତ ସୁବିଧା ହୋଇଥିବାରୁ ଅନ୍ତର୍ବାଣିଜ୍ୟ ଓ ଦେଶଜ ଦ୍ରବ୍ୟର ଉନ୍ନତି ବିଶେଷ ପରିମାଣରେ ସାଧିତ ହୋଇଅଛି । କଳକଜାହାଜ ପ୍ରାୟ ସମସ୍ତ ସୁନାବ୍ୟ ନଦୀରେ ଯିବାଆସିବା କରୁଅଛି । ଏକପଇସିଆ ଡାକଟିକଟ ପ୍ରଚଳିତ ହେବାରୁ ଅତି ଗରିବ ଲୋକେ ସୁଦ୍ଧା ସେମାନଙ୍କ ଦୂରସ୍ଥିତ ବନ୍ଧୁ ଓ କୁଟୁମ୍ବମାନଙ୍କୁ ଖବର ଦେଇପାରୁଅଛନ୍ତି । ପ୍ରତ୍ୟେକ ବଡ଼ ଗ୍ରାମରେ ଡାକଘର ବସିଗଲାଣି । ଭାରତରେ କୌଣସି ବଡ଼ ନଗର ନାହିଁ, ଯେଉଁଠାକୁ ରେଲ ନାହିଁ କି ତାରଡାକ ନାହିଁ । ଲକ୍ଷ ଲକ୍ଷ ସଡ଼କ ଓ ରେଲରାସ୍ତା ନିର୍ମିତ ହେଲାଣି, ଅନେକ ନାଲ ଖୋଲାଗଲାଣି, ତେଣୁ ଭାରତରେ ଆଉ ଏପରି ସ୍ଥାନ ନାହିଁ ଯେଉଁଠାକୁ ଲୋକେ ସହଜେ ଯାଇ ନ ପାରିବେ; କିମ୍ବା ଯେଉଁଠାରୁ ମାଲମସଲା ସହଜେ ଅନ୍ୟ ସ୍ଥାନକୁ ଆସି ନ ପାରିବ । ଏହାର ସୁଫଳ ଏହି ହୋଇଅଛି ଯେ ସାମ୍ରାଜ୍ୟର କୌଣସି ସ୍ଥାନରେ ଉତ୍ପାତ ଆରମ୍ଭ ହେଲେ ଇଂରେଜବାହାଦୁର ତତ୍‌କ୍ଷଣାତ୍ ସେଠାକୁ ଯାଇ ତାହାର ଦମନ କରୁଅଛନ୍ତି । ଦୁର୍ଭିକ୍ଷ କିମ୍ବା କୌଣସି ଦୈବୀ ବିପଦ୍ ଉପସ୍ଥିତ ହେଲେ ତତ୍‌କ୍ଷଣାତ୍ ତାହାର ପ୍ରତିବିଧାନ ହୋଇପାରୁଅଛି । ଭିନ୍ନ ଭିନ୍ନ ଜାତି ମିଳିତ ହୋଇ ଗୋଟିଏ ବୃହତ୍ ଭାରତୀୟ ମହାଜାତିରେ ପରିଣତ ହେଉଅଛନ୍ତି । ଏହାହିଁ ଇଂରେଜସାମ୍ରାଜ୍ୟର ସର୍ବଶ୍ରେଷ୍ଠ ସୁଫଳ । ପଠାଣ, ମୋଗଲ, ରାଜପୁତ, ମରହଟ୍ଟା, ଶିଖ, ପାର୍ସି, ବଙ୍ଗାଳି ଓ ଓଡ଼ିଆ ଆଜିକାଲି ବନ୍ଧୁ ଓ ପ୍ରତିବେଶୀ ପରି ପରସ୍ପରକୁ ଆଲିଙ୍ଗନ କରୁଅଛନ୍ତି ଏବଂ ଏକ ଅଖଣ୍ଡ ଛତ୍ରତଳେ ବାସ କରୁଅଛନ୍ତି ବୋଲି ଆପଣା ଆପଣାକୁ ଗୌରବାନ୍ୱିତ ମଣୁଅଛନ୍ତି ।

ସ୍ୱାସ୍ଥ୍ୟ ।—ସ୍ୱାସ୍ଥ୍ୟ ଅମୂଲ୍ୟ ଧନ, ଏହା ଜାଣି ଇଂରେଜବାହାଦୁର ଜନସାଧାରଣର ସ୍ୱାସ୍ଥ୍ୟ କିପରି ସୁରକ୍ଷିତ ଓ ଉନ୍ନତ ହେବ ଏ ବିଷୟରେ ବିଶେଷ ଯତ୍ନବାନ୍ ହେଉଅଛନ୍ତି । ଅନେକ ବଡ଼ ବଡ଼ ସହରରେ ଜଳ-କଳ ବସିଲାଣି । ଅଉ ରାସ୍ତା ଘାଟ ପରିଷ୍କାର କରିବାର ଓ ବର୍ଷାଜଳ ବହି-ଯିବାର ସୁବନ୍ଦୋବସ୍ତ ହେଲାଣି । ଆଧୁନିକ ବିଜ୍ଞାନାନୁସାରେ ଚିକିତ୍ସା-ବିଦ୍ୟା ଶିକ୍ଷା ଦେବାଲାଗି ଭାରତର ନାନା ସ୍ଥାନରେ ମେଡ଼ିକାଲ୍ କଲେଜ ଓ ସ୍କୁଲ୍‌ମାନ ସ୍ଥାପିତ ହୋଇଅଛି । ହାସ୍‌ପାତାଲ ଓ ଦାତବ୍ୟ ଚିକିତ୍ସାଳୟ ସ୍ଥାପିତ ହେବାରୁ ଗରିବ ଲୋକଙ୍କର ବିଶେଷ ଉପକାର ସାଧିତ ହେଉଅଛି ।

ଇଂରେଜୀଭାଷା ।—ଇଂରେଜବାହାଦୁରଙ୍କର ଶାସନ ଭାରତର ଲୋକମାନଙ୍କର ନୈତିକ ଓ ମାନସିକ ଜୀବନର ବିଶେଷ ଉନ୍ନତି ସାଧନ କରିଅଛି । ଏହାର ମୂଳକାରଣ ଇଂରେଜୀ-ଭାଷାଶିକ୍ଷା । ଇଂରେଜୀଭାଷା ଗୋଟିଏ ମହତ୍ତ୍ୱ ଭାଷା । ଏହାଦ୍ୱାରା ଆମ୍ଭେମାନେ ପାଶ୍ଚାତ୍ୟ ଦେଶର ଜ୍ଞାନଗରିମା ବୁଝିପାରୁଅଛୁଁ ଏବଂ ଅମ୍ଭମାନଙ୍କର ସ୍ଥାନୀୟ ଭାଷାମାନ ଇଉରୋପ ଓ ଅମେରିକାର ମହତ୍ ଭାବମାନ ଗ୍ରହଣ କରି ଉନ୍ନତି ଲାଭ କରୁଅଛି । ଇଂରେଜୀଭାଷା ଶିକ୍ଷା କରି ଆଜି ଭାରତର ବିଭିନ୍ନ ଜାତିମାନେ ପରସ୍ପର ନିକଟରେ ମନୋଗତ ଭାବ ପ୍ରକାଶ କରିପାରୁଅଛନ୍ତି; ଏକ ସାଧାରଣ ବୋଧଗମ୍ୟ ଭାଷାର ଚର୍ଚ୍ଚାଭାବରୁ ଆଜିଯାଏ ଏହା ସମ୍ଭବପର ହୋଇ ନ ଥିଲା ।

ଜନସାଧାରଣଙ୍କୁ ଶିକ୍ଷାଦାନ ।—ଜନସାଧାରଣଙ୍କୁ ଶିକ୍ଷା ଦାନ କରିବା ଇଂରେଜବାହାଦୁରଙ୍କର ଆଉ ଏକ ଅତି ମହତ୍ କାର୍ଯ୍ୟ । ସମସ୍ତ ଲୋକ ଜାତି-ଧର୍ମ୍ମ-ନିର୍ବିଶେଷରେ ପାଠ ପଢ଼ିପାରନ୍ତୁ, ଏଥିଲାଗି କଲେଜ ଓ ସ୍କୁଲ୍-ମାନ ଭାରତର ସର୍ବତ୍ର ସ୍ଥାପିତ ହୋଇଅଛି । ପ୍ରତ୍ୟେକ ଗ୍ରାମରେ

ପ୍ରାଥମିକ ବିଦ୍ୟାଳୟମାନ ସ୍ଥାପିତ ହେଲଣି । ଏହି ହେତୁରୁ ଯେଉଁମାନଙ୍କର ଉଚ୍ଚଶିକ୍ଷା ପ୍ରାପ୍ତ ହେବା କଠିନ, ସେମାନେ ସୁଦ୍ଧା କିଛି ନା କିଛି ଲେଖା-ପଢ଼ା ଶିଖିପାରୁଅଛନ୍ତି । ଇଂରେଜବାହାଦୁର କେବଳ ଜନସାଧାରଣଙ୍କୁ ଶିକ୍ଷା ଦେଇ ନିଶ୍ଚିନ୍ତ ରହିନାହାନ୍ତି । ଲୁପ୍ତ ହେଉଥିବା ପ୍ରାଚୀନ ଗ୍ରନ୍ଥ-ମାନଙ୍କର ଉଦ୍ଧାର ସାଧନ କରୁଅଛନ୍ତି । ଏଥିଲାଗି ଏସିୟାଟିକ ସୋସାଇଟୀ ନାମକ ଏକ ସମାଜ ସ୍ଥାପିତ ହୋଇଅଛି । ସଂସ୍କୃତ ଓ ପାର୍ସି ପ୍ରଭୃତି ମୃତଭାଷାର ଉନ୍ନତି ନିମନ୍ତେ ବଡ଼ ବଡ଼ ବିଦ୍ୟାଳୟମାନ ସ୍ଥାପିତ ହୋଇଅଛି ।

ମୁଦ୍ରାଯନ୍ତ୍ର :—ଜନସାଧାରଣଙ୍କୁ ଶିକ୍ଷାଦେବା ସମ୍ବନ୍ଧରେ ଏକା ମୁଦ୍ରା-ଯନ୍ତ୍ର ଯେତେ ପରିମାଣରେ ସାହାଯ୍ୟ କରିଅଛି, ଏପରି ଅଉ କୌଣସି ବୈଜ୍ଞାନିକ ଉଦ୍ଭାବନ କରିପାରି ନାହିଁ । ଏହାଦ୍ୱାରା ଗରିବ ଲୋକମାନେ ଅଳ୍ପ ମୂଲ୍ୟରେ ଏବଂ ଅନାୟାସରେ ପୁସ୍ତକମାନ ପ୍ରାପ୍ତ ହେଉଅଛନ୍ତି । ମୁଦ୍ରାଯନ୍ତ୍ର ଖବରକାଗଜପ୍ରଚଳନର ମୂଳ କାରଣ । ଆଜିକାଲି ଏ ଦେଶରେ ଖବରକାଗଜ ଏକ ନୂତନ ଶକ୍ତି ହୋଇଅଛି । ଏହାଦ୍ୱାରା ଆମ୍ଭେମାନେ ରାଜନୀତି ଶିଖିପାରୁଥାଉଁ, ଦେଶର ହାଲଚାଲ ଜାଣିପାରୁଥାଉଁ, ସମାଜର ଅଭାବ ସରକାରବାହାଦୁରଙ୍କୁ ଜଣାଇ ପାରୁଥାଉଁ ଏବଂ ଆମ୍ଭମାନଙ୍କର ନିଜ ନିଜ ଗୁହାରି ରାଜପୁରୁଷମାନଙ୍କ ନିକଟରେ ପ୍ରକାଶ କରି ପାରୁଥାଉଁ । ସୁପରିଚାଳିତ ସମ୍ବାଦପତ୍ରର କ୍ଷମତା ଅସୀମ ଏବଂ ସାଧାରଣ ଲୋକଙ୍କୁ ଶିକ୍ଷିତ କରାଇବା ବିଷୟରେ ଏହା ଏକ ଅମୋଘ ଉପାୟ । ଇଂରେଜ-ରାଜତ୍ୱ-ପ୍ରସାଦରୁହିଁ ଆମ୍ଭେମାନେ ଏହି ଉପାଦେୟ ବସ୍ତୁଟିକି ଏ ଦେଶରେ ପାଇଥାଉଁ ।

ଶାସନପ୍ରଣାଳୀ ।—ଇଂରେଜସାମ୍ରାଜ୍ୟ କେତେଗୋଟି ପ୍ରଦେଶରେ ବିଭକ୍ତ ହୋଇଅଛି । ପ୍ରତ୍ୟେକ ପ୍ରଦେଶରେ ଏକ ଏକ ଶାସନକର୍ତ୍ତା

ଅଛନ୍ତି । ଏମାନଙ୍କ ମଧ୍ୟରୁ କାହାରିକୁ ଗବର୍ଣ୍ଣର, କାହାକୁ ଲେଫ୍‌ଟେ-ନାଣ୍ଟ ଗବର୍ଣ୍ଣର, କାହାକୁ ଅବା ଚିଫ୍‌କମିଶନର କୁହାଯାଏ । ଶାସିତ ପ୍ରଦେଶ ବଡ଼ ସାନ ଥିବାରୁ ଶାସନକର୍ତ୍ତାମାନଙ୍କର ଏହିପରି ନାମ ହୋଇ-ଅଛି । ବମ୍ବେଇ ଓ ମାନ୍ଦ୍ରାଜର ଶାସନକର୍ତ୍ତାମାନେ ବିଲାତରୁ ୫ ବର୍ଷ ସକାଶେ ଆସନ୍ତି, ଏମାନଙ୍କୁ ଗବର୍ଣ୍ଣର କୁହାଯାଏ । ବଙ୍ଗଳା, ପୂର୍ବ-ବଙ୍ଗଳା ଓ ଆସାମ, ଉତ୍ତରପଶ୍ଚିମ ପ୍ରଦେଶ, ପଞ୍ଜାବ ଏବଂ ବ୍ରହ୍ମଦେଶର ଶାସନକର୍ତ୍ତାମାନଙ୍କୁ ଲେଫ୍‌ଟେନାଣ୍ଟ ଗବର୍ଣ୍ଣର କୁହାଯାଏ । ମଧ୍ୟପ୍ରଦେଶ, ବେରାର, କୁର୍ଗ, ଅଜମିର, ବ୍ରିଟିଶବେଲୁଚସ୍ଥାନ, ଆଣ୍ଡେମାନଦ୍ୱୀପ, ଆଉ ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶର ଶାସନକର୍ତ୍ତାମାନଙ୍କୁ ଚିଫ୍‌କମିଶନର କୁହାଯାଏ । ଏହିସବୁ ପ୍ରାଦେଶିକ ଶାସନକର୍ତ୍ତା ଗବର୍ଣ୍ଣର ଜେନେରାଲ ଏବଂ ଭାଇସ୍‌ରୟଙ୍କ ଅଧୀନ ଅଟନ୍ତି । ଭାଇସ୍‌ରୟ ବିଲାତରୁ ୫ ବର୍ଷ ସକାଶ ଆସନ୍ତି । ଭାଇସ୍‌ରୟ ମଧ୍ୟ ବିଲାତର ଭାରତସେକ୍ରେଟରୀ ଓ ତାଙ୍କ ସଭାର ଅଧୀନ । ଭାରତସେକ୍ରେଟରୀ ବ୍ରିଟିଶଗବର୍ଣ୍ଣମେଣ୍ଟଙ୍କ ଦ୍ୱାରା ନିଯୋ-ଜିତ ପାର୍ଲିମେଣ୍ଟସଭାର ଏକ ସଭ୍ୟ ଏବଂ ସେ ତାଙ୍କର କାର୍ଯ୍ୟଲାଗି ପାର୍ଲିମେଣ୍ଟମହାସଭା ପାଖରେ ଦାୟୀ; ଏଣୁ ଜାଣିବାକୁ ହେବ ଯେ ଭାରତରଶାସନ ବ୍ରିଟିଶଶାସନର ଏକ ଅଙ୍ଗମାତ୍ର ।

ଭାରତସଭା ଓ ପ୍ରାଦେଶିକ ସଭା—ଭାଇସ୍‌ରୟ ଓ ତାଙ୍କ ସଭାକୁ ଭାରତଗବର୍ଣ୍ଣମେଣ୍ଟ କୁହାଯାଏ । ଭାରତସଭାର ସଭ୍ୟମାନେ ରାଜସ୍ୱ, ସମର, ଆଇନ ପ୍ରଭୃତି ବିଭାଗର କର୍ତ୍ତା ଅଟନ୍ତି । ଏହା ଛଡ଼ା ବ୍ୟବସ୍ଥାପକ ସଭା ବୋଲି ସମୁଦାୟ ଭାରତ ନିମନ୍ତେ ଆଉ ଏକ ସଭା ଅଛି । ଏହା ଭାରତଗବର୍ଣ୍ଣମେଣ୍ଟଙ୍କ ମନ୍ତ୍ରିସମୂହ ଓ କେତେକ ସରକାରୀ କର୍ମଚାରୀ ଏବଂ ଦେଶୀୟ ଇଉରୋପୀୟ ସମାଜର ପ୍ରତିନିଧିସ୍ୱରୂପ କେତେକ ବେସରକାରୀ କର୍ମଚାରୀମାନଙ୍କ ଦ୍ୱାରା ଗଠିତ । ଏହି ସଭାର କାର୍ଯ୍ୟ ସମସ୍ତ

ଭାରତବର୍ଷ ନିମନ୍ତେ ଆଇନ ପ୍ରସ୍ତୁତ କରିବା । ମାନ୍ଦ୍ରାଜ, ବମ୍ବେଇ, ପଞ୍ଜାବ, ଉତ୍ତରପଶ୍ଚିମ ପ୍ରଦେଶ, ବଙ୍ଗଳା, ପୂର୍ବବଙ୍ଗଳା ଓ ଆସାମ, ବ୍ରହ୍ମଦେଶ ଲାଗି ମଧ୍ୟ ବ୍ୟବସ୍ଥାପକ ସଭାମାନ ଅଛି । ଏମାନେ ନିଜ ନିଜ ପ୍ରଦେଶର ଆଇନ ପ୍ରସ୍ତୁତ କରନ୍ତି । ଏମାନଙ୍କ ଦ୍ୱାରା ପ୍ରଣୀତ ଆଇନସମୂହ ଚଳିବା-ଲାଗି ଭାରତଗଭର୍ଣ୍ଣମେଣ୍ଟଙ୍କ ସମ୍ମତି ଆବଶ୍ୟକ ହୁଏ ।

କାର୍ଯ୍ୟକାରୀ ଓ ବିଚାରକାରୀ କର୍ମଚାରୀଗଣ—ପ୍ରତ୍ୟେକ ପ୍ରଦେଶ କେତେଗୁଡ଼ିଏ ଡିଷ୍ଟ୍ରିକ୍ଟରେ ବିଭକ୍ତ । ପ୍ରତ୍ୟେକ ଡିଷ୍ଟ୍ରିକ୍ଟରେ ଜଣେ ଲେଖାଏଁ ମାଜିଷ୍ଟ୍ରେଟ-କଲେକ୍ଟର ଓ କୌଣସି କୌଣସି ସ୍ଥାନରେ ଡେପୁଟି-କମିଶନର ଅଛନ୍ତି । ଏମାନେ ରାଜସ୍ୱ ଆଦାୟ କରନ୍ତି ଏବଂ ରାଜସ୍ୱ ଓ ଫୌଜଦାରି ସଂକ୍ରାନ୍ତ ସମସ୍ତ ମକଦ୍ଦମା ବୁଝନ୍ତି । ଏହାଛଡ଼ା ଏମାନେ ନିଜ ଡିଷ୍ଟ୍ରିକ୍ଟରେ ଥିବା ପୁଲିସ୍, ପୂର୍ତ୍ତବିଭାଗ, ମ୍ୟୁନିସିପାଲିଟି, ଶିକ୍ଷା ଓ ସ୍ୱାସ୍ଥ୍ୟ-ବିଭାଗର ତତ୍ତ୍ୱାବଧାରଣ କରନ୍ତି । ଏହିସବୁ ବିଭିନ୍ନ ପ୍ରକାର କାର୍ଯ୍ୟ ଲାଗି ଏମାନେ ଜଏଣ୍ଟ, ଆସିଷ୍ଟାଣ୍ଟ, ଡେପୁଟି ମାଜିଷ୍ଟ୍ରେଟ ପ୍ରଭୃତି ବଡ଼ ବଡ଼ କର୍ମ-ଚାରୀମାନଙ୍କଠାରୁ ଆରମ୍ଭ କରି ସାମାନ୍ୟ ଗ୍ରାମ୍ୟ ଚୌକିଦାର ପର୍ଯ୍ୟନ୍ତ ସମସ୍ତ କର୍ମଚାରୀଙ୍କଠାରୁ ସାହାଯ୍ୟ ପ୍ରାପ୍ତ ହୁଅନ୍ତି । କେତେଗୁଡ଼ିଏ ଡିଷ୍ଟ୍ରିକ୍ଟ ମିଳି ଏକ ଏକ ଡିଭିଜନ ଗଠିତ ହୋଇଅଛି । ପ୍ରତ୍ୟେକ ଡିଭିଜନରେ ଜଣେ ଲେଖାଏଁ କମିଶନର ଅଛନ୍ତି । ଆମ୍ଭମାନଙ୍କର ଓଡ଼ିଶା ଏକ ଡିଭି-ଜନ । ଏଥିରେ ଜଣେ କମିଶନର ଅଛନ୍ତି । କମିଶନର କଟକରେ ଥାନ୍ତି ।

ଓଡ଼ିଶାବିଭାଗ ପାଞ୍ଚ ଜିଲ୍ଲାରେ ବିଭକ୍ତ, ଯଥା—କଟକ, ପୁରୀ, ବାଲେଶ୍ୱର, ଅନୁଗୁଳ ଓ ସମ୍ବଲପୁର । କଟକ, ପୁରୀ, ବାଲେଶ୍ୱରରେ ମାଜିଷ୍ଟ୍ରେଟ-କଲେକ୍ଟର ଏବଂ ସମ୍ବଲପୁର ଓ ଅନୁଗୁଳରେ ଡେପୁଟିକମିଶ-ନର ଅଛନ୍ତି । ଏହାଛଡ଼ା ଓଡ଼ିଶା ପାଇଁ ଜଣେ ଡିଷ୍ଟ୍ରିକ୍ଟ ଜଜ୍ ଅଛନ୍ତି ।

ଜଜ ଆଉ ମାଜିଷ୍ଟ୍ରେଟମାନେ ବିଚାରକାର୍ଯ୍ୟରେ ହାଇକୋର୍ଟ ବା

ଶୀପ୍‌କୋର୍ଟର ଅଧୀନ । ହାଇକୋର୍ଟ ଓ ଚୀଫ୍‌କୋର୍ଟର ଆପୀଲ ବିଲା-ଡରେ ପ୍ରିଭି କାଉନ୍‌ସିଲରେ ଶୁଣାଯାଏ । ପ୍ରିଭି କାଉନ୍‌ସିଲର ନିଷ୍ପତ୍ତି ଚୂଡ଼ାନ୍ତ ।

---

## ୩୦ଶ ଅଧ୍ୟାୟ ।

### ସ୍ୱର୍ଗୀୟ ସମ୍ରାଟ୍ ସପ୍ତମ ଏଡ଼ୱାର୍ଡ଼ ।



ସ୍ୱର୍ଗୀୟ ସମ୍ରାଟ୍ ସପ୍ତମ ଏଡ଼୍‌ୱାର୍ଡ଼ ।

ଆମ୍ଭମାନଙ୍କର ବର୍ତ୍ତମାନ ରାଜ-ସମ୍ରାଟ୍ ୫ମ ଜର୍ଜଙ୍କର ପିତା ୭ମ ଏଡ଼୍‌ୱାର୍ଡ଼ ୧୯୧୦ ଅବ୍ଦର ମଇ ମାସ ତା ୬ ରଖରେ ଇହଜଗତରୁ ବିଦାୟ ନେଇଥିଲେ । ଭାରତ-ବାସୀ କାହିଁକି ସମଗ୍ର ପୃଥିବୀ ଅଜ ସେ ମହାତ୍ମାଙ୍କ ଗୁଣାବଳୀ ସ୍ମରଣ କରି ଗଭୀର ଶୋକ ପ୍ରକାଶ କରିଥିଲେ । ସେ ଆମ୍ଭମାନଙ୍କର ସମ୍ରାଟ୍ ଥିଲେ ସତ୍ୟ, କିନ୍ତୁ ସେ ନିଜ ମନୁଷ୍ୟତ୍ୱଗୁଣରେ ସମସ୍ତ ପୃଥିବୀକୁ ମୁଗ୍ଧ କରିଥିଲେ । ସେ ମାନବସମା-ଜରେ ଜଣେ ପ୍ରଧାନ ରାଜନୀତିଜ୍ଞ ବୋଲି ଖ୍ୟାତିଲାଭ କରିଥିଲେ । ସେ ସମଗ୍ର ଜନସାଧାରଣର ମଙ୍ଗଳନିମିତ୍ତେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଭାରତୀୟ ପ୍ରଜାମାନଙ୍କ ପ୍ରତି ତାଙ୍କର ଅସୀମ କୃପା ପ୍ରଦର୍ଶିତ ହୋଇଥିଲା । ଯୁବରାଜ ଥିଲାବେଳେ ସେ ଭାରତକୁ

ଯେଉଁ ଚକ୍ଷୁରେ ଦେଖୁଥିଲେ ସମ୍ରାଟ୍ ହୋଇ ମଧ୍ୟ ସେହି ଚକ୍ଷୁରେ ଦେଖିଥିଲେ । ତାଙ୍କର ଜନନୀ ଚିରସ୍ମରଣୀୟା ଭିକ୍ଟୋରିଅଙ୍କ ପରି ସେ ଭାରତବାସୀ ସମସ୍ତଙ୍କୁ ସମଭାବରେ ସ୍ନେହ କରୁଥିଲେ ସିପାହି-ବିଦ୍ରୋହପରେ ମହାରାଣୀ ଭିକ୍ଟୋରିଆ ଆମ୍ଭମାନଙ୍କୁ ଯେଉଁ ଅଭୟ-ବାଣୀ ଶୁଣାଇଥିଲେ ତାହା ତୁମ୍ଭେମାନେ ପଢ଼ିଅଛ । ସେହି ଘୋଷଣାର ପଞ୍ଚାଶଦ୍ବାର୍ଷିକ ଉତ୍ସବରେ ସମ୍ରାଟ୍ ଏଡ଼ୱାର୍ଡ଼ ଆମ୍ଭମାନଙ୍କୁ ଯାହା କହି ସାନ୍ତ୍ୱନା ଦେଇଥିଲେ ତାହା ଏହି :—"ଆମ୍ଭେ ଆମ୍ଭର ସ୍ୱର୍ଗୀୟା ଜନନୀଙ୍କ ପରି ଭାରତବାସୀମାନଙ୍କ ପ୍ରତି ପ୍ରୀତିମାନ୍ । ୧୮୭୫ ରେ ଭାରତକୁ ଯାଇ ଆମ୍ଭେ ଯେଉଁ ପ୍ରୀତିର ଭାବ ପୋଷଣ କରି ଆସିଅଛୁଁ, ସେ ଭାବ ଆଜିପର୍ଯ୍ୟନ୍ତ ଜାଗରୂକ ଅଛି, ଏବଂ ତାହା ମରଣ ପର୍ଯ୍ୟନ୍ତ ରହିବ । ଆମ୍ଭର ପୁତ୍ର ଓ ପୁତ୍ରବଧୂ ଭାରତକୁ ଯାଇସେହି ଭାବ ପୋଷଣ କରି ଆସିଅଛନ୍ତି । ଆମ୍ଭମାନଙ୍କ ରାଜପରିବାରରେ ସେହି ଭାବ ସର୍ବଦା ଜାଗ୍ରତ ଥିବ ।" ଏପରି ଅମୃତମୟ ଅଭୟବାଣୀ କିଏ ଦେବ ? ଅଧୁନା ଭାରତରେ ଯେଉଁ ଶାସନସଂସ୍କାର ପ୍ରବର୍ତ୍ତିତ ହୋଇ-ଅଛି, ଏବଂ ଯେଉଁ ବିଷୟ ତୁମ୍ଭେମାନେ ପଢ଼ିଅଛ, ତାହାର ପ୍ରବର୍ତ୍ତକ ମହାତ୍ମା ଏଡ଼ୱାର୍ଡ଼ ଅଟନ୍ତି । ସେ ଏହାର ଭାବୀ ଶୁଭଫଳ-କାମନାରେ ଅତ୍ୟନ୍ତ ଆନନ୍ଦିତ ହେଉଥିଲେ । କିନ୍ତୁ ହାୟ ! ବିଧି ତାହାଙ୍କୁ ଏହି ଶୁଭଫଳ ଦେଖିବାକୁ ଦେଲେ ନାହିଁ । ସେ କେବଳ ୯ ବର୍ଷ କାଳ ରାଜତ୍ୱ କରିଥିଲେ । ଏହି ଅଳ୍ପ ସମୟମଧ୍ୟରେ ଆମ୍ଭେ-ମାନେ ତାଙ୍କର ଏପ୍ରକାର କୃପା ପ୍ରାପ୍ତ ହୋଇ ଭବିଷ୍ୟତ୍ ନିମନ୍ତେ ଆହୁରି ଉଚ୍ଚତର ଆଶା ପୋଷଣ କରିଥିଲୁଁ । କିନ୍ତୁ ବିଧାତାଙ୍କର ଇଚ୍ଛା ଅନ୍ୟପ୍ରକାର ।

ସଂକ୍ଷିପ୍ତ ଜୀବନୀ :—ସପ୍ତମ ଏଡ଼ୱାର୍ଡ଼ ୧୮୪୧ ଅବ୍ଦର ନଭେମ୍ବର

ମାସ ତା ୯ ରଖରେ ଜନ୍ମଗ୍ରହଣ କରିଥିଲେ । ସେ ଆମ୍ଭମାନଙ୍କ ଚିର-ସ୍ମରଣୀୟା ସମ୍ରାଜ୍ଞୀ ଭିକ୍ଟୋରିଅଙ୍କ ଜ୍ୟେଷ୍ଠ ପୁତ୍ର । ସେ ୧୮୪୨ ଅବ୍ଦରେ ପ୍ରିନ୍ସ ଅବ୍ ୱେଲସ୍ ଉପାଧି ଗ୍ରହଣ କରିଥିଲେ । ଇଂଲଣ୍ଡ ଦେଶର ଭାବୀ ଉତ୍ତରାଧିକାରୀଙ୍କୁ ଏହି ଉପାଧି ଦିଆଯାଏ । ବାଲ୍ୟକାଳରେ ଏଡ଼ୱାର୍ଡ଼ ତାଙ୍କ ମାତା ଏବଂ ସୁଶିକ୍ଷକମାନଙ୍କ ଅଧୀନରେ ରହି ଉପଯୁକ୍ତ ଶିକ୍ଷା ପାଇଥିଲେ । ୧୮୫୮ ରେ ଏହି ମହାତ୍ମା "ନାଇଟ" ଉପାଧିରେ ଭୂଷିତ ହୋଇଥିଲେ । ୧୮୬୧ ରେ ଏହାଙ୍କ ପିତାଙ୍କର ମୃତ୍ୟୁ ଘଟିଥିଲା । ୧୮୬୨ ରେ ଏଡ଼ୱାର୍ଡ଼ ନିଜ ମୃତ ପିତାଙ୍କ ଇଚ୍ଛାପୂରଣ କରିବାଲାଗି ଅର୍ଥାତ୍ ପିତୃ-ଋଣପରିଶୋଧାର୍ଥ "ହୋଲିଲାଣ୍ଡ" ବା ତୀର୍ଥସ୍ଥାନ ପାଲେଷ୍ଟାଇନରେ ପରିଭ୍ରମଣ କରିଥିଲେ । ୧୮୬୩ ରେ ସେ ଯୁବରାଜ-ରୂପେ ପାର୍ଲିମେଣ୍ଟର ଲର୍ଡ଼ସଭାରେ ଆସନ ଗ୍ରହଣ କରିଥିଲେ । ସେହି ଅବ୍ଦରେ ଡେନମାର୍କର ରାଜକୁମାରୀ ଆଲେକ୍‌ଜାଣ୍ଡ୍ରାଙ୍କ ସହି ତାଙ୍କର ପରିଣୟ ହୋଇଥିଲା । ୧୮୬୪ ରେ ତାଙ୍କର ଜ୍ୟେଷ୍ଠ ପୁତ୍ର ଆଲବର୍ଟ ଭିକ୍ଟର ଏବଂ ୧୮୬୫ ରେ ତାଙ୍କର ମଧ୍ୟମ ପୁତ୍ର ଜର୍ଜ ଆଲବର୍ଟ ଜନ୍ମ-ଗ୍ରହଣ କରିଥିଲେ । ଯୁବରାଜ ଏଡ଼ୱାର୍ଡ଼ଙ୍କର ବିଦେଶଭ୍ରମଣ-ସ୍ପୃହା ଅତ୍ୟନ୍ତ ବଳବତୀ ଥିଲା । ୧୮୬୯ ରେ ସେ ମିସର ଓ ତୁରସ୍କ ଦେଶ ଏବଂ ୧୮୭୧ ରେ ଆୟର୍ଲଣ୍ଡ ଭ୍ରମଣ କରିଥିଲେ । ଏହି ବର୍ଷ ସେ କଠିନ ବାତକଫଜ୍ୱରରେ ଆକ୍ରାନ୍ତ ହୋଇଥିଲେ । କିନ୍ତୁ ଈଶ୍ୱରଙ୍କ କୃପାରୁ ଆରୋଗ୍ୟ ଲାଭ କରିଥିଲେ । ୧୮୭୪ ରେ ଯୁବରାଜ ଏଡ଼ୱାର୍ଡ଼ ରୁଷିଆ ଦେଶରେ ଭ୍ରମଣ କରିବାକୁ ଯାଇଥିଲେ । ୧୮୭୫ ରେ ସେ ଆମ୍ଭ-ମାନଙ୍କ ଦେଶକୁ ଆଗମନ କରିଥିଲେ । ଏହା ତୁମ୍ଭେମାନେ ଏଥିପୂର୍ବେ ପଢ଼ିଅଛ । ଏଠାରେ ସେ ୧୭ ସପ୍ତାହ ରହି ଭାରତର ପ୍ରାୟ ସମସ୍ତ ସ୍ଥାନ ପରିଭ୍ରମଣ କରିଥିଲେ । ଦେଶୀୟ ରାଜାମାନେ ତାଙ୍କୁ ନିଜ ନିଜ ରାଜଧାନୀକୁ ନିମନ୍ତ୍ରଣ କରିନେଇ ଅଶେଷ ପ୍ରକାରେ ସମ୍ବର୍ଦ୍ଧନା କରି-

ଥିଲେ । ୧୮୯୬ ରେ ତାଙ୍କର ଗୋଟିଏ ଭୟାନକ ଦୁର୍ଘଟନା ଘଟିଥିଲା । ତାଙ୍କର ଜ୍ୟେଷ୍ଠ ପୁତ୍ର ଆଲବର୍ଟ ଭିକ୍ଟର ମୃତ୍ୟୁମୁଖରେ ପତିତ ହୋଇଥିଲେ । ଏଥିଯୋଗୁଁ ଯୁବରାଜଙ୍କର ଅସୀମ ମନଃକଷ୍ଟ ହୋଇଥିଲା । ୧୯୦୧ ରେ ତାହାଙ୍କର ମାତୃବିୟୋଗ ଘଟିଥିଲା । ମାତାଙ୍କ ମୃତ୍ୟୁପରେ ସେ ସପ୍ତମ ଏଡ୍‌ୱାର୍ଡ଼ ନାମ ଧାରଣ କରି ସିଂହାସନାରୋହଣ କରିଥିଲେ । ସମ୍ରାଟ୍ ହେବାପରେ ସେ ପ୍ରଜାମାନଙ୍କ ହିତସାଧନାର୍ଥ ଅକ୍ଲାନ୍ତ ପରିଶ୍ରମ କରିଥିଲେ । ୯ ବର୍ଷ ରାଜତ୍ୱପରେ ୭୦ ବର୍ଷ ବୟସରେ ଏଡୱାର୍ଡ଼ ପଞ୍ଚତ୍ୱପ୍ରାପ୍ତ ହୋଇଥିଲେ ।

---

## ନୂତନ ସମ୍ରାଟ୍ ପଞ୍ଚମ ଜର୍ଜ ।

ଏହି ମହାତ୍ମା ସପ୍ତମ ଏଡ୍‌ୱାର୍ଡ଼ଙ୍କ ଦ୍ୱିତୀୟ ପୁତ୍ର । ପିତାଙ୍କ ମୃତ୍ୟୁପରେ ପଞ୍ଚମ ଜର୍ଜ ନାମ ଧାରଣପୂର୍ବକ ଏହି ମହାତ୍ମା ସିଂହାସନାରୋହଣ କରି ଆମ୍ଭମାନଙ୍କର ସମ୍ରାଟ୍ ହୋଇଅଛନ୍ତି । ଏହି ନୂତନ ସମ୍ରାଟ୍ ବଡ଼ ଅମାୟିକ, ସରଳପ୍ରାଣ, ପରଦୁଃଖକାତର ଓ ସାହସୀ ; ଏବଂ ସେ କର୍ତ୍ତବ୍ୟପାଳନରେ କଦାପି ପରାଙ୍ମୁଖ ହୁଅନ୍ତି ନାହିଁ । ଭାରତବାସୀଙ୍କ ଉପରେ ପିତାଙ୍କ ପରି ଏହି ମହାତ୍ମାଙ୍କର ବିଶେଷ ସହାନୁଭୂତି ଅଛି । ୧୯୦୫ ରେ ଯେତେବେଳେ ସେ ଭାରତକୁ ସସ୍ତ୍ରୀକ ଆସିଥିଲେ, ସେତେବେଳେ ତାଙ୍କର ଅମାୟିକତା, ସରଳ ବ୍ୟବହାର ଓ ସହାନୁଭୂତି ଦେଖି ଭାରତବାସୀ ମୁଗ୍ଧ ହୋଇଥିଲେ । ସେତେବେଳେ ତାହାଙ୍କ ସହଧର୍ମିଣୀ ରାଣୀ ମେରୀ ମଧ୍ୟ ସହାନୁଭୂତି ପ୍ରକାଶଦ୍ୱାରା ଭାରତବାସୀଙ୍କ ଚିତ୍ତାକର୍ଷଣ କରିଥିଲେ । ଭାରତରୁ ଫେରିଯାଇ ୫ମ ଜର୍ଜ (ତତ୍କାଳୀନ ଯୁବରାଜ) ଲଣ୍ଡନରେ ଯେଉଁ ବକ୍ତୃତା କରିଥିଲେ ସେଥିରୁ ଜଣାଯାଏ ଯେ

ସେ ଭାରତବାସୀଙ୍କୁ ଅତ୍ୟନ୍ତ ସ୍ନେହ-ଚକ୍ଷୁରେ ଦେଖିଅଛନ୍ତି ଓ ଦେଖୁଅଛନ୍ତି । ପରମ ପିତା ପରମେଶ୍ୱର ଏହାଙ୍କୁ ଦୀର୍ଘଜୀବୀ କରନ୍ତୁ, ଏହା ଆମ୍ଭମାନଙ୍କର ସର୍ବଦା ପ୍ରାର୍ଥନା ।



ଉପସଂହାର ।

ବର୍ତ୍ତମାନ ତୁମ୍ଭେମାନେ ଭାରତର ଇତିହାସ ପଢ଼ିସାରିଲ । ହିନ୍ଦୁ, ପଠାଣ ଓ ମୋଗଲମାନଙ୍କ ଅମଳରେ ଲୋକେ କିପରି ଥିଲେ ତାହା ଜାଣିଲ । ଇଂରେଜବାହାଦୁରଙ୍କ ଅମଳରେ ଆମ୍ଭେମାନେ କିପରି ସୁଖଶାନ୍ତିରେ ଅଛୁଁ ତାହା ଜାଣିଲ ଓ ଜାଣୁଅଛ । ତୁମ୍ଭମାନଙ୍କ ମଧ୍ୟରୁ ଅନେକେ ପୂର୍ବକାଳରେ ଅଯୋଧ୍ୟାର ରାଜା ଶ୍ରୀରାମଚନ୍ଦ୍ରଙ୍କ କଥା ଶୁଣିଥିବ । ଏହାଙ୍କ ଅମଳରେ ପ୍ରଜାମାନେ ଅତି ସୁଖରେ କାଳ କଟାଇଥିଲେ । ଏଥିଲାଗି 'ରାମରାଜ୍ୟ' କହିଲେ ଆଦର୍ଶ ରାଜ୍ୟ ବୁଝାଯାଏ । ବର୍ତ୍ତମାନ ଆମ୍ଭେମାନେ

ସେହିପରି ରାମରାଜ୍ୟରେ ବାସ କରୁଥାଉଁ । ହଜାର ହଜାର ବର୍ଷ କଷ୍ଟ ସହ୍ୟ କରି ଭାରତମାତା ବର୍ତ୍ତମାନ ବ୍ରିଟିଶ କେଶରୀଙ୍କର ଆଶ୍ରିତା ହୋଇ ସୁଖଶାନ୍ତି ଭୋଗ କରୁଅଛନ୍ତି । ଯାହାଙ୍କ କୃପାବଳରୁ ଆମ୍ଭେମାନେ ସୁଖଶାନ୍ତି ଭୋଗ କରୁଥାଉଁ ଏବଂ ଏକ ଅଖଣ୍ଡ ଛତ୍ରତଳେ ରହି ଭାରତମାତା ତଥା ବ୍ରିଟିଶସାମ୍ରାଜ୍ୟର କୋଟି କୋଟି ସନ୍ତାନମାନଙ୍କୁ ଭ୍ରାତୃଭାବରେ ଆଲିଙ୍ଗନ କରୁଥାଉଁ, ସେହି ପରମପିତା ପରମେଶ୍ୱରଙ୍କୁ ଆସ ଆମ୍ଭେମାନେ ଅନ୍ତରର ସହି ଧନ୍ୟବାଦ ଦେବା, ଏବଂ ଯେଉଁ ରାଜରାଜେଶ୍ୱରଙ୍କ ଦୋର୍ଦ୍ଦଣ୍ଡବଳରୁ ଆମ୍ଭେମାନେ ଏହି ସୁଖଭୋଗ କରୁଥାଉଁ, ତାଙ୍କ ଦୀର୍ଘଜୀବନଲାଗି ଆସ ପରମପିତା ପରମେଶ୍ୱରଙ୍କଠାରେ ଅନ୍ତରର ସହିତ ପ୍ରାର୍ଥନା କରିବା । ଆମ୍ଭମାନଙ୍କର ରାଜଭକ୍ତି ଅଟଳ ରହୁ । ବର୍ତ୍ତମାନ ଅମ୍ଭମାନଙ୍କର ଇତିହାସ ସମାପ୍ତ ହେଲା । ତୁମ୍ଭେମାନେ ସମସ୍ତେ ଥରେ ଏକବାକ୍ୟରେ ଓ ଉଚ୍ଚ ସ୍ୱରରେ କହ,

"ଜୟ ଜୟ ପଞ୍ଚମ ଜର୍ଜର ଜୟ ।"

Printed at the Orissa Mission Press, by R. J. Grundy,
for the Publishers.—3/3000.